# ବାଳ ଗଙ୍ଗାଧର ତିଳକ

ପ୍ରକାଶକ—
ଡାଇମଣ୍ଡ ପବ୍ଲିଶର୍ସ
ତେଲେଙ୍ଗା ବଜାର, କଟକ-୯
ପ୍ରାପ୍ତି ସ୍ଥାନ
କଟକ ଟ୍ରେଡ଼ିଙ୍ଗ୍ କମ୍ପାନୀ
ବାଲୁବଜାର, କଟକ-୨
ମୁଦ୍ରଣ —
ଇଉନିକ ପ୍ରିଣ୍ଟର୍ସ
ବାଲୁବଜାର, କଟକ-୨
ପ୍ରଥମ ସଂସ୍କରଣ
ସେପ୍ଟେମ୍ବର ୧୭ ତାରିଖ, ଗଣେଶପୂଜା-୧୯୮୩
ମୂଲ୍ୟ ଟ ୪ ୦୦ (ଚାରିଟଙ୍କା ମାତ୍ର)

# Bala Gangadhar Tilaka

*Publishers*
**Diamond Publishers**
Telenga Bazar,
**CUTTACK-9**

To be had off:—
**Cuttack Trading Company**
Balu Bazar,
**CUTTACK-2.**

Printed at:
**Unique Printers**
Balu Bazar, Cuttack-2

First Edition—September, 17th, 1983.
**Price Rs. 4-00**

# ବାଲଗଂଗାଧର ତିଲକ

## (ପ୍ରାରମ୍ଭିକ ସୂଚନା)

"ସ୍ୱାଧୀନତା ପ୍ରତ୍ୟେକ ମାନବର ଜନ୍ମଗତ ଅଧିକାର । ଅନ୍ୟ କାହାରଠାରୁ ସ୍ୱାଧୀନତାର ଅଧିକାର ମିଳିବ ନାହିଁ । ପ୍ରକୃତ ଆତ୍ମତ୍ୟାଗ ପାଇଁ ଦୃଢ଼ ପ୍ରତିଜ୍ଞା ଏବଂ ସେ ପ୍ରତିଜ୍ଞା ଯଦି ବଜ୍ରତୁଲ୍ୟ ଦୃଢ଼ ହୁଏ, ତେବେ ସ୍ୱର୍ଗ ଓ ମର୍ତ୍ତ୍ୟରେ ଏପରି କୌଣସି ଶକ୍ତି ନାହିଁ, ଯାହାକି ଆମ୍ଭମାନଙ୍କର ଲକ୍ଷ୍ୟ ଲାଭ ପଥରେ ଅନ୍ତରାୟ ହେବ ।"

ଯେଉଁ ବୀର ପୁରୁଷଙ୍କର ଏହି ନିର୍ଭୀକ ଓ ଅଗ୍ନିମୟ ବାଣୀ ଭାରତର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଭାରତବାସୀର କଣ୍ଠକୁହରରେ ବାଜି ଉଠୁଛି, ଯେ ସର୍ବତ୍ୟାଗୀ ସ୍ୱଦେଶଭକ୍ତ, ଦେଶ ଓ ଦଶର ସେବାରେ ସାରା-ଜୀବନ କଟାଇଦେଇ ଯାଇଛନ୍ତି, ଯେ ପୁରୁଷସିଂହ, ନିଜର ଆଦର୍ଶ ଚରିତ୍ର ବଳରେ ଦେଶବାସୀଙ୍କୁ ଉନ୍ନତି ଓ କର୍ତ୍ତବ୍ୟ ପଥରେ ପ୍ରଣୋଦିତ କରି ଯାଇଛନ୍ତି, ଯେ ଉଦାରଚରିତ, ନିଃସ୍ୱାର୍ଥ, ନିଷ୍କାମ ମାତୃଭକ୍ତ ଦେଶବାସୀ-ଙ୍କର ମଙ୍ଗଳପାଇଁ ଆତ୍ମଦାନ କରିଯାଇଛନ୍ତି, ଭାରତମାତାର ସେହି ସର୍ବ-ଶ୍ରେଷ୍ଠ ବୀର ସନ୍ତାନ, ପୃଥିବୀ ବିଖ୍ୟାତ ପଣ୍ଡିତଙ୍କ, ଭାରତୀୟ ବିପ୍ଳବର ଜନକ, ସ୍ୱରାଜ୍ୟ ଆନ୍ଦୋଳନର ଜନ୍ମଦାତା ଲୋକମାନ୍ୟ ବାଲଗଙ୍ଗାଧର ତିଳକ ଇହଧାମ ତ୍ୟାଗ କରିବାର ବହୁକାଳ ହୋଇଗଲାଣି ।

'ସ୍ୱରାଜ୍ୟ' ଏହି ଶବ୍ଦଟି ଯେତେଦିନ ଭାରତବାସୀଙ୍କ ହୃଦୟରେ ଜାଗରୁକ ଥିବ, ଲୋକମାନ୍ୟ ତିଲକ ସେତେଦିନ ତାଙ୍କ ହୃଦୟରେ ଦେବତାରୂପେ ପୂଜା ପାଉଥିବେ ।

ଲୋକମାନ୍ୟଙ୍କର ଜୀବନୀ ବିଶଦଭାବେ ଆଲୋଚନା କଲେ ଦେଖାଯାଏ ଯେ ତାହାଙ୍କ କର୍ମମୟ ଜୀବନର ଆରମ୍ଭରୁ ତାହାଙ୍କୁ ନାନାକଷ୍ଟ ଓ ଲାଞ୍ଛନା ଭୋଗିବାକୁ ପଡ଼ିଥିଲା । ଭାରତର ସ୍ୱାଧୀନତା ପାଇଁ ବାରମ୍ବାର ଜେଲ ବରଣକରି, ଅସହ୍ୟ ଦୁଃଖ, କଷ୍ଟକୁ ଆନନ୍ଦରେ ବରିନେଇ ଶେଷରେ ନିଜର ଶେଷ ରକ୍ତବିନ୍ଦୁ ସେ ଦେଶପାଇଁ ଦେଇ ଯାଇଛନ୍ତି ।

ଲୋକମାନ୍ୟ ସ୍ୱରାଜ୍ୟ ଆନ୍ଦୋଳନର ଜନ୍ମଦାତା । 'ସ୍ୱରାଜ୍ୟ ମୋ'ର ଜନ୍ମଗତ ଅଧିକାର'—ଏହି ବାଣୀ ପ୍ରଚାର କରି ଭାରତକୁ ସେ ନବଜୀବନ ଦେଇ ଯାଇଛନ୍ତି । ତିଳକହିଁ ପ୍ରଥମେ ଦେଶବାସୀଙ୍କୁ ଶିକ୍ଷା ଦେଇଥିଲେ— "ନିଜ ଉପରେ ବିଶ୍ୱାସ ରଖ, 'ସ୍ୱରାଜ' ସହଜାପ୍ରାପ୍ତ ହେବ; ଭିକ୍ଷା କଲେ ସ୍ୱରାଜ ମିଳିବ ନାହିଁ ।" ଦେଶ ଓ ଜାତିର ବହୁ ଭାଗ୍ୟଫଳରୁ ତିଲକଙ୍କ ପରି ଶିକ୍ଷାଗୁରୁଙ୍କର ଆବିର୍ଭାବ ହୋଇଥିଲା । ତିଲକ ମହାରାଜ, ତାଙ୍କର ଅସାଧାରଣ ସାଧନା ବଳରେ ବୁଝି ପାରିଥିଲେ—"ସ୍ୱାବଲମ୍ବନହିଁ ସ୍ୱରାଜର ନାମାନ୍ତର ଏବଂ ତାହାଙ୍କର ଏହି ଦୃଢ଼ଧାରଣା ତାଙ୍କ ଜୀବନର ଶେଷ ମୂହୂର୍ତ୍ତ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହିଥିଲା ।



# ଜନ୍ମ ଓ ପାଠ୍ୟାବସ୍ଥା

ଲୋକମାନ୍ୟ ବାଳଗଙ୍ଗାଧରତିଳକ ୧୮୫୬ ମସିହା ଜୁଲାଇ ମାସ ତା ୨୩ରିଖରେ ବୋମ୍ବାଇ ପ୍ରଦେଶର ରତ୍ନଗିରି ସହରରେ ଜନ୍ମଗ୍ରହଣ କରି-ଥିଲେ । ତିଳକଙ୍କ ପିତା ସ୍ୱର୍ଗତ ଗଙ୍ଗାଧର ରାମଚନ୍ଦ୍ର ତିଳକ ଜଣେ ବଡ଼ ପଣ୍ଡିତ ଥିଲେ । ସେ ପ୍ରଥମେ ରତ୍ନଗିରି ବିଦ୍ୟାଳୟରେ ସହକାରୀ ଶିକ୍ଷକ ରୂପେ କାର୍ଯ୍ୟ କରୁଥିଲେ । ପରେ ନିଜର ବିଦ୍ୟା, ବୁଦ୍ଧି ଓ ଚରିତ୍ର ବଳରେ ପୁନା ଶିକ୍ଷା ବିଭାଗର ଡେପୁଟି ଇନିସ୍‌ପେକ୍‌ଟର ହୋଇଥିଲେ । ତିଳକଙ୍କ ପିତା ଯେପରି ଧାର୍ମିକ, ମାତା ମଧ୍ୟ ସେହିପରି ଧର୍ମପରାୟଣା ଥିଲେ । ତେଣୁ ସେ ପିଲାଦିନୁ ପିତାମାତାଙ୍କର ଏହି ଧର୍ମାନୁରାଗ ଉତ୍ତରାଧିକାରୀ ସୂତ୍ରେ ଲାଭ କରିଥିଲେ । ତିଳକଙ୍କର ଦଶବର୍ଷ ବୟସ ବେଳେ ତାଙ୍କର ମାତୃ ବିୟୋଗ ହେବାରୁ ପିତା ଅତିଶୟ ସ୍ନେହବଶତଃ ପୁତ୍ରକୁ ଘରୋଇ-ଭାବେ ଶିକ୍ଷା ଦେବାକୁ ଲାଗିଲେ । ଅଙ୍କ, ସଂସ୍କୃତରେ ତିଳକଙ୍କର ଗଭୀର ଅନୁରାଗ ଥିଲା । ଏପରିକି ସେ ଆଠବର୍ଷ ବୟସରେ ଅମରକୋଷର ଅର୍ଦ୍ଧେକ ମୁଖସ୍ଥ କରି ପକାଇଥିଲେ । ବିଦ୍ୟାଳୟରେ ପାଠ୍ୟପୁସ୍ତକର ସୀମା ମଧ୍ୟରେ ଆବଦ୍ଧ ନ ରହି ସେ ନିଜ ଇଚ୍ଛାନୁଯାୟୀ ଜ୍ଞାନଚର୍ଚ୍ଚା କରୁଥିଲେ । ଏଥିରେ ଶିକ୍ଷକମାନଙ୍କ ସହିତ ତାଙ୍କର ବାରମ୍ବାର ମତଭେଦ ଘଟୁଥିଲା ।

ସେ ମୁହେଁ ମୁହେଁ ଅଙ୍କ କଷି ପାରୁଥିଲେ । ଛାତ୍ରାବସ୍ଥାରେ କଦାପି ନୋଟବୁକ୍ ବ୍ୟବହାର କରୁ ନଥିଲେ । ତିଳକଙ୍କର ସ୍ମୃତିଶକ୍ତି ବଡ଼ ପ୍ରଖର ଥିଲା । ସେ ପିଲାବେଳେ ଖୁବ୍ ଖେଳପ୍ରିୟ ଥିଲେ ସିନା ପଢ଼ା ଶୁଣାରେ ତାଙ୍କର ଯଥେଷ୍ଟ ଆଗ୍ରହ ଥିଲା । ତାଙ୍କ ପିତାଙ୍କର କ୍ଷୁଦ୍ର ଲାଇବ୍ରେରୀରେ ତାଙ୍କୁ ଅନେକ ସମୟରେ ଏକାଗ୍ରତାର ସହିତ ଅଧ୍ୟୟନ କରୁଥିବାର ଦେଖାଯାଉ-ଥିଲା । ୧୮୬୯ ମସିହାରେ ରତ୍ନଗିରି ଜିଲ୍ଲାର ଲାଡ଼ଘର ଗ୍ରାମର ସ୍ୱର୍ଗତ

ତାପିବାଈଙ୍କ ସହିତ ତିଲକଙ୍କର ବିବାହ ହୋଇଥିଲି । ବିବାହର ବର୍ଷେକ-ପରେ ତାଙ୍କ ପିତାଙ୍କ ମୃତ୍ୟୁ ହେବାରୁ ସେ ଶୋକ ଦୁଃଖରେ ବଡ଼ ଅଧୀର ହୋଇ ପଡ଼ିଥିଲେ । କିନ୍ତୁ ଏଥିରେ ତାଙ୍କ ପଡ଼ାପଢ଼ିରେ କିଛି ବ୍ୟାଘାତ ଘଟି ନ ଥିଲି । ପିତାଙ୍କ ମୃତ୍ୟୁର ଚାରିମାସ ପରେ ସେ ଏଣ୍ଟ୍ରାନ୍ସ ପାଶ କରି ପୁନାର ଡେକାନ କଲେଜରେ ୪ ବର୍ଷ ପଢ଼ି କୃତିତ୍ୱର ସହିତ ବି, ଏ, ପାଶ କଲେ । ୧୮୭୯ ମସିହାରେ ଓକିଲତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଏଲ୍, ଏଲ୍, ବି, ଉପାଧି ଲଭିକଲେ । ଓକିଲତି ପଢ଼ିବାବେଳେ ପରଲୋକଗତ ଶ୍ରୀଯୁକ୍ତ ଆଗାରକାରଙ୍କ ସହିତ ତାଙ୍କର ବନ୍ଧୁତା ହେଲା । ଆଗାରକାର ସେତେବେଳେ ପୁନାର ବିଖ୍ୟାତ ଫର୍ଗୁସନ କଲେଜର ଅଧ୍ୟକ୍ଷ । ଆଗାରକାର ଓ ତିଲକ ଏହି ଦୁଇବନ୍ଧୁ ଆଉ କେତେଜଣ ବନ୍ଧୁଙ୍କ ସହିତ ଦେଶବାସୀଙ୍କର ସମୂହ ମଙ୍ଗଳ ପାଇଁ ନାନା କଳ୍ପନା ଜଳ୍ପନା କରୁଥିଲେ । କିପରି ଦେଶର ଜନସାଧାରଣଙ୍କର ସର୍ବାପେକ୍ଷା ଅଧିକ ଉପକାର କରାଯାଇପାରେ, ଏ ବିଷୟରେ ସେମାନେ ଗଭୀର ଭାବେ ଚିନ୍ତା କରୁଥିଲେ । ଶେଷରେ ସେମାନେ ସ୍ଥିର କଲେ ଯେ ସେ ଦୁହିଁଙ୍କ ଭିତରୁ କେହି ସରକାରୀ ଚାକିରି କରିବେ ନାହିଁ । ଗୋଟିଏ ବେସରକାରୀ ସ୍କୁଲ ବା କଲେଜ ସ୍ଥାପନ କରି ତହିଁରେ ଦେଶର ଭବିଷ୍ୟତ ଆଶାଭରସାର ସ୍ଥଳ ଯୁବକମାନଙ୍କୁ ଅଳ୍ପ ବ୍ୟୟରେ ଯଥାଯୋଗ୍ୟ ଶିକ୍ଷାଦେଇ ସେମାନଙ୍କୁ ପ୍ରକୃତ ମନୁଷ୍ୟରୂପେ ବିବେଚିତ କରାଇବେ ।

———

# ପ୍ରଥମ ଲୋକସେବା ଉଦ୍ୟମ

ଆଗାରକାରଙ୍କ ସହିତ ପରାମର୍ଶ କରି ତିଲକ ଏହିପରି ଭାବରେ ତାହାଙ୍କର ଭବିଷ୍ୟତ ଜୀବନର କର୍ମପନ୍ଥା ସ୍ଥିର କଲେ । ଶେଷରେ ତାହାଙ୍କର ଏହି ଉଚ୍ଚାକାଂକ୍ଷା ଜାଗ୍ରତ ହେଲା ଯେ ସେ ଆଉ ଓକିଲାତି ନକରି କେବଳ ଶିକ୍ଷାଦାନ କାର୍ଯ୍ୟରେ ଜୀବନ ଉତ୍ସର୍ଗ କରିବେ । ଆଗାରକାରଙ୍କର ମଧ୍ୟ ସେହିପରି ଇଚ୍ଛାଥିଲା, କିନ୍ତୁ ସେମାନଙ୍କ ପରି ସହାୟ-ସମ୍ବଳହୀନ ଯୁବକ ମାନଙ୍କ ପକ୍ଷରେ ଏହା ଯେ ବାସ୍ତବିକ ଦୁରୂହ, ଏହା ସେମାନେ ଉପଲବ୍ଧି କରି ପାରିଥିଲେ । ସେମାନଙ୍କର ଏହି ଦୃଢ଼ସଙ୍କଳ୍ପ ଶୁଣି ଲୋକେ ସେମାନଙ୍କୁ ଉପହାସ କରିବାକୁ ଲାଗିଲେ । କିନ୍ତୁ ଏଥିପ୍ରତି ସେମାନଙ୍କର ତିଳେମାତ୍ର ଭ୍ରୂକ୍ଷେପ ନଥିଲା । ସେମାନଙ୍କର ଉତ୍ସାହ ଓ ଅଧ୍ୟବସାୟ ହ୍ରାସ ନହୋଇ ବରଂ ବର୍ଦ୍ଧିତ ହେବାକୁ ଲାଗିଲା । ସେହି ସମୟରେ ଶ୍ରୀଯୁକ୍ତ ବିଷ୍ଣୁକୃଷ୍ଣ ଚିପଲୁନକାର ସରକାରୀ ଶିକ୍ଷାବିଭାଗରୁ ଇସ୍ତଫା ଦେଇ ସ୍ୱାଧୀନ ଭାବରେ ଶିକ୍ଷାଦାନ କରିବାକୁ ଇଚ୍ଛୁକ ହୋଇଥିଲେ ଏବଂ ଗୋଟିଏ ବେସରକାରୀ ହାଇସ୍କୁଲ ଖୋଲିବା ପାଇଁ ଦୃଢ଼ପ୍ରତିଜ୍ଞ ହୋଇ ପୁନାରେ ଉପସ୍ଥିତ ହୋଇଥିଲେ । ତାଙ୍କର ଏହି ମନୋଗତ ଭାବ ଯଥା ସମୟରେ ଯୁବକ ତିଲକ ଓ ଆଗାରକାରଙ୍କ କର୍ଣ୍ଣଗୋଚର ହେଲା । ପରଲୋକଗତ ଏମ୍, ବି, ନାମଯୋଶୀ ଏମାନଙ୍କ ସହିତ ମଧ୍ୟ ଯୋଗ ଦେଲେ । ନାମଯୋଶୀ ଯେପରି ଅଧ୍ୟବସାୟୀ ଥିଲେ, ତାଙ୍କର ବୁଦ୍ଧିବୃତ୍ତି ମଧ୍ୟ ସେହିପରି ପ୍ରଖର ଥିଲା । ତାଙ୍କର ଉତ୍ସାହ ଓ ଅଧ୍ୟବସାୟରେ ଅନୁପ୍ରାଣିତ ହୋଇ ତିଲକ ଓ ଚିପଲୁନକାର ୧୮୮୦ ମସିହା ଜାନୁଆରୀ ତା ୧ ରିଖରେ ପୁନାରେ ଗୋଟିଏ ନୂତନ ଇଂରାଜୀ ବିଦ୍ୟାଳୟ ସ୍ଥାପନ କଲେ । ଭି, ଏସ୍, ଆପ୍ଟେ ନାମକ ଅନ୍ୟଜଣେ ସୁଯୋଗ୍ୟ ବ୍ୟକ୍ତି ମଧ୍ୟ ଏମାନଙ୍କ ସହିତ ଯୋଗଦେଲେ ।

ମହାରାଷ୍ଟ୍ରର ଏହି ପଞ୍ଚପାଣ୍ଡବ ଅଦମ୍ୟ ଉତ୍ସାହର ସହିତ ଶିକ୍ଷାଦାନ କାର୍ଯ୍ୟ ଚଳାଇବାକୁ ଲାଗିଲେ । ସେମାନଙ୍କର ଅକ୍ଲାନ୍ତ ଅଧ୍ୟବସାୟ ଓ ଚେଷ୍ଟା ଫଳରେ ସ୍କୁଲଟିର ଉତ୍ତରୋତ୍ତର ଉନ୍ନତ ହେବାକୁ ଲାଗିଲା । ଶିକ୍ଷାଦାନ ସଙ୍ଗେ ସଙ୍ଗେ ଏହି ପାଞ୍ଚଜଣ ଯୁବକ 'କେଶରୀ ଓ ମରହଟ୍ଟା' ନାମକ ଦୁଇ-ଖଣ୍ଡି ସମ୍ବାଦପତ୍ର ପ୍ରକାଶ କଲେ । କେଶରୀ ମରହଟ୍ଟୀ ଭାଷାରେ ଓ ମରହଟ୍ଟା ଇଂରେଜୀ ଭାଷାରେ ପ୍ରକାଶିତ ହେଲା । ଆଗାରକାର ଓ ତିଲକ ଯଥାକ୍ରମେ ଏହି ଦୁଇଖଣ୍ଡି ଖବରକାଗଜର ସମ୍ପାଦକ ହେଲେ । ଏ ଦୁଇଖଣ୍ଡି ଖବର-କାଗଜ ଆଜି ପର୍ଯ୍ୟନ୍ତ ଚାଲୁଛି । ତିଲକ ମହାରାଜ ଏହି ଦୁଇଖଣ୍ଡି ପତ୍ରିକାର ପ୍ରାଣସ୍ୱରୂପ ଥିଲେ ଏବଂ ପତ୍ରିକା ଦୁଇଟିର ସମ୍ପାଦନରେ ପ୍ରାଣପଣ ଲଗାଇ ସେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବହୁ ଦୁଃଖ କ୍ଲେଶ ବରଣ କରିଥିଲେ ।

---

# ପ୍ରଥମ ଥର ୪ମାସ ଜେଲ

ତୀବ୍ର ସମାଲୋଚନା ଓ ନିର୍ଭୀକ ଲେଖା 'ମରହଟ୍ଟା ଓ କେଶରୀ' ପତ୍ରିକା ମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା । ଏ ଦୁଇଟି ପତ୍ରିକା ପ୍ରକାଶିତ ହେବାର ଅଳ୍ପଦିନ ମଧ୍ୟରେ ତିଲକ ମହାରାଜ 'ସତକଥା କହିବା ଯେ ସବୁ ସମୟରେ ନିରାପଦ ନୁହେଁ—ଏହି କଠୋର ସତ୍ୟ ହୃଦୟଙ୍ଗମ କରି ପାରି-ଲେ । ମହାରାଷ୍ଟ୍ର କୁଳତିଳକ ଶିବାଜୀଙ୍କ ବଂଶଧର କୋହ୍ଲାପୁରର ଯୋଗ୍ୟାନ୍ଦନ ମହାରାଜା ଶିବାଜୀ ରାଓଙ୍କ ପ୍ରତି ବାର୍ଭେ ନାମକ ଷ୍ଟେଟ ରାଜ-ମନ୍ତ୍ରୀଙ୍କର ଦୁର୍ବ୍ୟବହାର ଦେଖି ନବୀନ ସମ୍ପାଦକ ଦ୍ୱୟଙ୍କର ରକ୍ତ ଗରମ ହୋଇଉଠିଲା । ସେମାନେ ପତ୍ରିକାର ସମ୍ପାଦକୀୟ ସ୍ତମ୍ଭରେ ବାର୍ଭେଙ୍କୁ

ତୀବ୍ରଭାବରେ ସମାଲୋଚନା କରିଥିଲେ । ଫଳରେ ବାର୍ଭେ, ତିଲକ ଓ ଆଗାରକାରଙ୍କ ନାମରେ ମାନହାନି ମୋକଦ୍ଦମା ଦାୟର କଲେ । ବିଚାରରେ ସେମାନେ ପ୍ରତ୍ୟେକେ ଚାରିମାସ ବିନାଶ୍ରମ କାରାଦଣ୍ଡରେ ଦଣ୍ଡିତ ହୋଇ-ଥିଲେ । କିନ୍ତୁ ଏହି କାରାଦଣ୍ଡ ଫଳରେ ତିଲକ ଓ ତାଙ୍କର ବନ୍ଧୁ ଆଗାରକାରଙ୍କର ଜନପ୍ରିୟତା ଯଥେଷ୍ଟ ବଢ଼ିଗଲା ଏବଂ ସେମାନଙ୍କର କର୍ମପ୍ରାଣତା ଓ ଉତ୍ସାହ ମଧ୍ୟ ବହୁ ପରିମାଣରେ ବଢ଼ି ଯାଇଥିଲା । ଆଉ ମଧ୍ୟ ପୁନାର ନବ ପ୍ରତିଷ୍ଠିତ ସ୍କୁଲ ଏବଂ 'କେଶରୀ ଓ ମରହଟ୍ଟା' ଖବରକାଗଜ ଦୁଇଟି ମାରାଠି ସମାଜରେ ବିଶେଷ ଆଦୃତ ହେଲା । ଦେଶର ଚାରିଆଡ଼ୁ ସେମାନେ ସାହାଯ୍ୟ ପାଇବାକୁ ଲାଗିଲେ । ଖବରକାଗଜ ଦୁଇଟିର ସାହାଯ୍ୟାର୍ଥେ ଏକ ନାଟକ ଅଭିନୀତ ହୋଇଥିଲା । ମହାପ୍ରାଣ ଗୋଖେଲ ମଧ୍ୟ ଏହି ଅଭିନୟରେ ଅଂଶ ଗ୍ରହଣ କରିଥିଲେ ।

---

## ଦାକ୍ଷିଣାତ୍ୟ ଶିକ୍ଷା ସମିତି

ଜେଲରୁ ମୁକ୍ତିଲାଭ କରି ତିଲକ ମହାରାଜ ପୁଣି ଶିକ୍ଷାଦାନ କାର୍ଯ୍ୟରେ ମନୋନିବେଶ କଲେ । ଚିପଲୋନକାରଙ୍କ ମୃତ୍ୟୁପରେ ତିଲକଙ୍କର ଦାୟିତ୍ୱ ଗୁରୁତର ହେଲା । ତିଲକଙ୍କୁ ସମସ୍ତ କାର୍ଯ୍ୟର ପରିଚାଳନା ଭାର ଓ ନାମ-ଯୋଶୀଙ୍କୁ କର୍ତ୍ତୃତ୍ୱ ଭାର ଗ୍ରହଣ କରିବାକୁ ପଡ଼ିଲା । ୧୮୮୪ ମସିହାର ଶେଷ ଭାଗରେ ପୂର୍ବୋକ୍ତ କର୍ମିଦଳ ତିଲକଙ୍କ ନେତୃତ୍ୱରେ ପୁନାରେ 'ଦାକ୍ଷିଣାତ୍ୟ ଶିକ୍ଷା ସମିତି' ନାମକ ଏକ ପ୍ରସିଦ୍ଧ ଅନୁଷ୍ଠାନ ସ୍ଥାପନ କରିଥିଲେ । କ୍ରମେ ବହୁ ଯୁବକ ଏହି ଦଳରେ ଯୋଗ ଦେଇଥିଲେ । ସେମାନଙ୍କ ମଧ୍ୟରୁ

କେଲକାର, ଧାରପ, ଗୋଲେ, ଭାନୁ, ପଟ୍ଟନକାର ଏବଂ ଗୋଖେଲଙ୍କ ନାମ ବିଶେଷ ଉଲ୍ଲେଖ ଯୋଗ୍ୟ । ଏହି ସମିତିର ଉଦ୍ୟମରେ ପୁନାର ବିଖ୍ୟାତ ଫର୍ଗୁସନ କଲେଜ ସ୍ଥାପିତ ହୋଇଥିଲା ଏବଂ ସମିତିର ଆଜୀବନ ସଭ୍ୟମାନେ ସମସ୍ତେ ପ୍ରତିଶ୍ରୁତି ଦେଇଥିଲେ ଯେ ସେମାନେ ୨୦ ବର୍ଷ ପର୍ଯ୍ୟନ୍ତ ଏହି କଲେଜରେ ଅଳ୍ପ ବେତନରେ ଅଧ୍ୟାପନା କାର୍ଯ୍ୟ କରିବେ । ଦାକ୍ଷିଣାତ୍ୟ ଶିକ୍ଷା ସମିତି ଅଧୀନସ୍ଥ ଅନୁଷ୍ଠାନମାନ କ୍ରମେ ଅଧିକ ଉନ୍ନତି ଲାଭ କରିବାକୁ ଲାଗିଲା ।

ତିଲକ ମହାରାଜ କଲେଜରେ ଗଣିତ, ବିଜ୍ଞାନ ଓ ସଂସ୍କୃତ ଶିକ୍ଷା ଦେଉଥିଲେ । ତାଙ୍କର ପାଣ୍ଡିତ୍ୟ ଓ ଶିକ୍ଷା କୌଶଳରେ ଛାତ୍ରମାନେ ମୁଗ୍ଧ ହୋଇ ଯାଉଥିଲେ । ତିଲକ ଛାତ୍ରମାନଙ୍କୁ ସର୍ବଦା ସନ୍ତୁଷ୍ଟ ରଖିବା ପାଇଁ ଚେଷ୍ଟା କରୁଥିଲେ । ଅତି ଅଳ୍ପକାଳ ମଧ୍ୟରେ ସେ ଜଣେ ପ୍ରଧାନ ଅଧ୍ୟାପକ ରୂପେ ଗଣ୍ୟ ହେଲେ । ତିଲକ ମହାରାଜଙ୍କର ଅଧ୍ୟାପନା ସର୍ବାଙ୍ଗ ସୁନ୍ଦର ଓ ମୌଳିକତ୍ୱ ପୂର୍ଣ୍ଣ ଥିଲା ।

---

## ପଦତ୍ୟାଗ

କ୍ରମାଗତ ୫ ବର୍ଷକାଳ ଖୁବ୍ ସୁଖ୍ୟାତିର ସହିତ କାର୍ଯ୍ୟ କରି ୧୮୯୦ ମସିହାରେ ତିଲକ ମହାରାଜ ଅଧ୍ୟାପକ ପଦ ଛାଡ଼ିଦେଇଥିଲେ । ଏଣେ ଦାକ୍ଷିଣାତ୍ୟ ଶିକ୍ଷା ସମିତିର ସଭ୍ୟମାନଙ୍କ ମଧ୍ୟରେ ନାନାକାରଣରୁ ମତ-ଭେଦ ଓ ମନୋମାଳିନ୍ୟ ଘଟିଲା । ବିଶେଷତଃ ତିଲକ ଓ ଆଗାରକାରଙ୍କ ମଧ୍ୟରେ ଭୀଷଣ ମତଦ୍ୱୈଧ ଉପସ୍ଥିତ ହୋଇଥିଲା । ଶ୍ରୀଯୁକ୍ତ ଆଗାରକାର ପତ୍ରିକା ଦୁଇଟି (କେଶରୀ ଓ ମରହଟ୍ଟା) ସହିତ ସମ୍ପର୍କ ତୁଟାଇ ଦେଇ

'ସୁଧାରକ' ନାମକ ଖଣ୍ଡିଏ ନୂତନ ସମ୍ବାଦପତ୍ର ପ୍ରକାଶ କଲେ । ଏହି ସମୟରେ ଦାକ୍ଷିଣାତ୍ୟ ଶିକ୍ଷା ସମିତିରୁ ତିଲକଙ୍କ ପଦତ୍ୟାଗର ଅନ୍ୟ ଏକ ଗୁରୁତର କାରଣ ଉପସ୍ଥିତ ହେଲା । ୧୮୮୯ ମସୀହାରେ ଅଧ୍ୟାପକ ଗୋଖେଲ ପୁନା ସାର୍ବଜନୀକ ସଭାର ସମ୍ପାଦକ ରୂପେ ନିଯୁକ୍ତ ହେଲେ । ତିଲକ ମହାରାଜ, ଗୋଖେଲଙ୍କର ଏହି ପଦ ଗ୍ରହଣରେ ଆପତ୍ତି ଉତ୍ଥାପନ କରିଥିଲେ । ତିଲକଙ୍କର ମତ ଥିଲା ଯେ ଯେଉଁମାନେ ଦାକ୍ଷିଣାତ୍ୟ ଶିକ୍ଷା ସମିତିର ଆଜୀବନ ସଭ୍ୟ, ସେମାନଙ୍କର ସମସ୍ତ ସମୟ ଓ ଶକ୍ତି କଲେଜର ଉନ୍ନତି ପାଇଁ ଶିକ୍ଷାଦାନ କାର୍ଯ୍ୟରେ ବ୍ୟୟ କରିବା ଉଚିତ । ଗୋଖେଲ ଶିକ୍ଷକ ଥାଇ ମଧ୍ୟ ଏକ ରାଜନୈତିକ ଅନୁଷ୍ଠାନର ସମ୍ପାଦକ ହେଲେ ଏବଂ ସମିତିର ଅନ୍ୟାନ୍ୟ ସଭ୍ୟମାନେ ତାଙ୍କୁ ସମ୍ପାଦକ ପଦ ଗ୍ରହଣକରିବା ପାଇଁ ଯେ ସମ୍ମତି ପ୍ରଦାନ କଲେ, ଏହାହିଁ ତିଲକଙ୍କର ପଦତ୍ୟାଗର ମୂଳ କାରଣ ।

ଦାକ୍ଷିଣାତ୍ୟ ଶିକ୍ଷା ସମିତିର ସମସ୍ତ ସମ୍ପର୍କ ତୁଟାଇ ଦେଇ ତିଲକ ମହାରାଜ ଦେଶ ଓ ଦଶର ସେବାରେ ଅଧିକ ପରିମାଣରେ ଆତ୍ମନିୟୋଗ କରିବାକୁ ସମର୍ଥ ହୋଇଥିଲେ । ତିଲକ ମହାରାଜ 'କେଶରୀ ଓ ମରହଟ୍ଟା' ଉଭୟ ପତ୍ରିକାର ସମ୍ପାଦକତ୍ୱ ଗ୍ରହଣ କରି ସ୍ୱାଧୀନ ଓ ନିର୍ଭୀକ ଭାବରେ ପତ୍ରିକା ଦୁଇଟି ଚଳାଇବାକୁ ଲାଗିଲେ । ଲୋକମାନ୍ୟ ତିଲକ ତାଙ୍କ କାଗଜର ନାମ 'କେଶରୀ' ରଖିଥିଲେ । ଯଥାର୍ଥରେ ଏହି କାଗଜର ନାମ-କରଣ ଅନୁସାରେ ସେ ସିଂହ ପରି ସ୍ୱାଧୀନତା ସଂଗ୍ରାମରେ ତାଙ୍କର ପ୍ରତିପକ୍ଷ ଓ ବିରୋଧୀମାନଙ୍କୁ ଠିକଣା ଜବାବ ଦେଉଥିଲେ ।

ତିଲକ ମହାରାଜାଙ୍କ ଉଦ୍ୟମରେ ପୁନାରେ ଗୋଟିଏ ଆଇନ କଲେଜ ପ୍ରତିଷ୍ଠିତ ହୋଇଥିଲା । ବୋମ୍ବେ ପ୍ରଦେଶ ମଧ୍ୟରେ ଏହାହିଁ ସର୍ବ-ପ୍ରଥମ ଆଇନ କଲେଜ ।

---

## ଓରାୟନ

ଅସାଧାରଣ ମନୀଷା-ସମ୍ପନ୍ନ ଲୋକମାନ୍ୟ ତିଲକ ଯେ କେବଳ ରାଜନୀତି ଚର୍ଚ୍ଚାରେ ଆବଦ୍ଧ ରହୁଥିଲେ ତାହା ନୁହେଁ । ବିଦ୍ୟା ଚର୍ଚ୍ଚାରେ ମଧ୍ୟ ତାହାଙ୍କର ବହୁ ସମୟ ଅତିବାହିତ ହେଉଥିଲା । ତାଙ୍କର ଅସାଧାରଣ ପ୍ରତିଭା, ହିନ୍ଦୁଶାସ୍ତ୍ର ଚର୍ଚ୍ଚା, ଶ୍ରୀମଦ୍ ଭଗବଦ୍ଗୀତା ଓ ଋକବେଦ ଆଲୋଚନାରେ ନିୟୋଜିତ ହେଉଥିଲା । ବିଭିନ୍ନ ବେଦର କାଳ ନିରୂପଣ ସମ୍ପର୍କରେ ସେ ବହୁ ଗବେଷଣାପୂର୍ଣ୍ଣ କେତୋଟି ପ୍ରବନ୍ଧ ଲେଖିଥିଲେ ଏବଂ ସେହି ପ୍ରବନ୍ଧମାନ ୧୮୯୨ ମସୀହାରେ ଲଣ୍ଡନଠାରେ ଅନୁଷ୍ଠିତ ପ୍ରାଚ୍ୟ ବିଦ୍ୟାବିତ୍‌ମାନଙ୍କ ଆନ୍ତର୍ଜାତିକ ବୈଠକରେ ବିଶେଷ ଆଦୃତ ଓ ପ୍ରଶଂସିତ ହୋଇଥିଲା ।

ଜାତିର ପ୍ରତିଷ୍ଠା ଓ ପରିସ୍ଥିତି ଦେଖାଇବା ପାଇଁ ଏବଂ ଗ୍ରୀକ୍ ସଭ୍ୟତା ଅପେକ୍ଷା ହିନ୍ଦୁ ସଭ୍ୟତା ଯେ ବହୁ ପ୍ରାଚୀନ, ଏହା ପ୍ରମାଣ କରିବା ଉଦ୍ଦେଶ୍ୟରେ ସେ 'ଓରାୟନ' ନାମକ ଏକ ଗ୍ରନ୍ଥ ପ୍ରକାଶ କରିଥିଲେ । ଏହା ବେଦର ପ୍ରାଚୀନତ୍ୱ ସମ୍ବନ୍ଧରେ ଗବେଷଣା ମୂଳକ ରଚନା । ୧୮୯୩ ମସୀହାରେ ଗ୍ରନ୍ଥଟି ପ୍ରକାଶିତ ହୋଇଥିଲା । 'ଓରାୟନ' ଗ୍ରନ୍ଥରେ ତିଲକ ମହାରାଜ ପ୍ରମାଣ ସହ ଉଲ୍ଲେଖ କରିଛନ୍ତି ଯେ ଖ୍ରୀଷ୍ଟ ଜନ୍ମର ୪ ହଜାର ବର୍ଷ ପୂର୍ବରୁ ପ୍ରାଚୀନ ଆର୍ଯ୍ୟଜାତି ଗୋଟିଏ ସ୍ଥାନରେ ଅବସ୍ଥାନ କରୁଥିଲେ ଏବଂ ସେହି ସମୟରେ ଋକ୍ ବେଦର ସ୍ତୋତ୍ରମାନ ରଚିତ ହୋଇଥିଲା । ଉଚ୍ଚ ଗଣିତ ବିଦ୍ୟା ଓ ଫଳିତ ଜ୍ୟୋତିଷରେ ତିଲକଙ୍କର ଯେ ଅସାଧାରଣ ପାରଦର୍ଶିତା ଥିଲା, ଉକ୍ତ ଗ୍ରନ୍ଥରୁ ମଧ୍ୟ ତହିଁର ଯଥେଷ୍ଟ ପରିଚୟ ମିଳେ । ଅଧ୍ୟାପକ ମାକ୍ସମୂଲର, ଜେକ୍‌ବି, ଓୟେବାର ପ୍ରମୁଖ ବହୁ ପାଶ୍ଚାତ୍ୟମନୀଷୀ ଏହି ଗ୍ରନ୍ଥର ପ୍ରଶଂସା କରିଯାଇଛନ୍ତି । ଜନ୍‌ହପକିନ୍‌ସ ବିଶ୍ୱବିଦ୍ୟାଳୟର

ଡକ୍ଟର ବ୍ଲୁମ୍‌ଫିଲଡ୍ ବିଶ୍ୱବିଦ୍ୟାଳୟର ଅଧିବେଶନରେ 'ଓରାୟନ' ଗ୍ରନ୍ଥ କଥା ଉଲ୍ଲେଖ କରି ତିଳକଙ୍କର ଭୂୟସୀ ପ୍ରଶଂସା କରିଥିଲେ । ବକ୍ତୃତା ପ୍ରସଙ୍ଗରେ ସେ କହିଥିଲେ, "ଗ୍ରନ୍ଥକାରଙ୍କ ପ୍ରତିପାଦ୍ୟ ବିଷୟମାନ ଯେ ଆମ୍ଭେମାନେ ସ୍ୱୀକାର କରିବାକୁ ବାଧ୍ୟ ହୋଇଛୁଁ, ଏହା ମୁଁ ମୁକ୍ତକଣ୍ଠରେ ସ୍ୱୀକାର କରୁଅଛି । ଗ୍ରନ୍ଥର ସିଦ୍ଧାନ୍ତମାନ ସାହିତ୍ୟ ଜଗତରେ ଓ ଇତିହାସ କ୍ଷେତ୍ରରେ ଏକ ବିପ୍ଳବ ସୃଷ୍ଟି କରିଅଛି ।"



## ରାଓ ସାହେବ ବାପାଟଙ୍କ ମୋକଦ୍ଦମା

୧୮୯୪ ମସିହାରେ ବରୋଦା ରାଜ୍ୟର ସେଟଲମେଣ୍ଟ ବିଭାଗର ଉଚ୍ଚପଦସ୍ଥ କର୍ମଚାରୀ ରାଓସାହେବ ବାପାଟଙ୍କ ବିରୁଦ୍ଧରେ ଲାଞ୍ଚ ନେବା ଅଭିଯୋଗରେ ଏକ ମୋକଦ୍ଦମା ଦାୟର ହୋଇଥିଲା । ବାପାଟ ତିଳକ ମହାରାଜଙ୍କର ଜଣେ ଘନିଷ୍ଠ ବନ୍ଧୁ ଥିଲେ । ତେଣୁ ବ୍ୟକ୍ତିଗତ ବନ୍ଧୁତା ଖାତିରରେ ଓ ବରୋଦା ରାଜ୍ୟର ସ୍ୱାର୍ଥ ନିମିତ୍ତ ତିଳକ ମହାରାଜ ଏହି ମୋକଦ୍ଦମା ଗ୍ରହଣ କରିଥିଲେ ଏବଂ ଅନ୍ୟାନ୍ୟ ଓକିଲଙ୍କ ସହିତ ଖୁବ୍ ବିଚକ୍ଷଣତା ସହକାରେ ବନ୍ଧୁଙ୍କ ପକ୍ଷ ସମର୍ଥନ କରି ତାଙ୍କୁ ନିର୍ଦ୍ଦୋଷ ପ୍ରମାଣ କରାଇଥିଲେ । ଏହି ମୋକଦ୍ଦମାରେ ତିଳକଙ୍କର ଗଭୀର ଆଇନାଭିଜ୍ଞତା ଏବଂ ବନ୍ଧୁପ୍ରୀତିର ଯଥେଷ୍ଟ ପରିଚୟ ମିଳିଥିଲା ।



## ବୋଂବେ ପ୍ରାଦେଶିକ ସମିଳନୀ

ବୋମ୍ବେ ପ୍ରାଦେଶିକ ସମ୍ମିଳନୀର ପ୍ରଥମ ପାଞ୍ଚୋଟି ଅଧିବେଶନ ଲୋକମାନ୍ୟଙ୍କର ଅଦମ୍ୟ ଚେଷ୍ଟାରେ ଅନୁଷ୍ଠିତ ହୋଇଥିଲା । ପଞ୍ଚମ ଅଧିବେଶନଟି ସର୍ବାପେକ୍ଷା ସଫଳ ହୋଇଥିଲା । ଏହାର ଠିକ୍ ବର୍ଷକପରେ ସେତେବେଳର ବଡ଼ଲାଟ ଲର୍ଡ଼ ଡଫରିନ୍‌ଙ୍କ ଭେଦନୀତି ଯୋଗୁଁ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ଭୟଙ୍କର ଗଣ୍ଡଗୋଳ ଘଟିଥିଲା । ତିଲକ ମହାରାଜ ଏହି ଭେଦନୀତି ବିରୁଦ୍ଧରେ ତୀବ୍ର ପ୍ରତିବାଦ କରୁଥିବାରୁ ସରକାର-ର ତାଙ୍କ ପ୍ରତି ଅସନ୍ତୋଷ ଜନ୍ମିଥିଲା । ତିଲକଙ୍କ ପ୍ରତି ବୋମ୍ବେ ସରକାରର ଅସନ୍ତୋଷର ଏହାହିଁ ପ୍ରଥମ ସୂଚନା ।

ତିଲକ ମହାରାଜାଙ୍କର ଦେଶର ଜନସାଧାରଣଙ୍କ ଉପରେ ଯଥେଷ୍ଟ ପ୍ରଭାବ ଥିଲା । ସେ ଏଥିମଧ୍ୟରେ ଦୁଇଥର ବୋମ୍ବେ ବ୍ୟବସ୍ଥାପକ ସଭାର ସଭ୍ୟ ଏବଂ ବୋମ୍ବେ ବିଶ୍ୱବିଦ୍ୟାଳୟର ସଭ୍ୟରୂପେ ନିର୍ବାଚିତ ହୋଇ-ଥିଲେ । ୧୮୯୫ ମସିହାରେ ସବୁଠାରୁ ବେଶୀ ଭୋଟ ପାଇ ପୁନା ମ୍ୟୁନିସିପାଲିଟିର କମିଶନର ନିର୍ବାଚିତ ହୋଇଥିଲେ । ପ୍ରାଦେଶିକ ଲାଟ ସଭାରେ ସେ ଯେପରି କାର୍ଯ୍ୟ କରୁଥିଲେ, କଂଗ୍ରେସରେ ଯୋଗଦେଇ ମଧ୍ୟ ସେହିପରି କାର୍ଯ୍ୟ କରୁଥିଲେ । ପୁନାରେ ଯେଉଁ ବର୍ଷ କଂଗ୍ରେସ ହୋଇଥିଲା, ସେହି ବର୍ଷ କଂଗ୍ରେସ ମଣ୍ଡପରେ ନିଖିଳ ଭାରତ ସାମାଜିକ ସମ୍ମିଳନୀ ହେବାର ପ୍ରସ୍ତାବ ହୋଇଥିଲା ; କିନ୍ତୁ ତିଲକ ମହାରାଜ ସେ ସମ୍ମିଳନୀ କରାଇଦେଲେ ନାହିଁ । ସେ ସେତେବେଳେ କଂଗ୍ରେସ ଅଭ୍ୟର୍ଥନା ସମିତିର ସାଧାରଣ ସମ୍ପାଦକ । ତିଲକ ମହାରାଜାଙ୍କର ସାମାଜିକ ଓ ରାଜନୈତିକ ଆନ୍ଦୋଳନକୁ ସର୍ବଦା ସମ୍ପୂର୍ଣ୍ଣରୂପେ ସ୍ୱତନ୍ତ୍ର ରଖିବାର ଇଚ୍ଛା ଏଥିରୁ ସ୍ପଷ୍ଟ ଜଣାଯାଏ ।

———

# ଦୁର୍ଭିକ୍ଷ ଓ ପ୍ଲେଗ୍

୧୮୯୬ ଓ ୯୭ ମସିହାରେ ମହାରାଷ୍ଟ୍ର ପ୍ରଦେଶରେ ଭୀଷଣ ଦୁର୍ଭିକ୍ଷ ଓ ପ୍ଲେଗ ଉପସ୍ଥିତ ହେଲା । ଏଥିରେ ପରୋପକାରୀ ଓ ମହାମତି ତିଳକଙ୍କର ପ୍ରାଣ କାନ୍ଦି ଉଠିଲା । ମହାରାଷ୍ଟ୍ର ପ୍ରଦେଶର ଏ ଘୋର ବିପଦବେଳେ ସେ ଯେଉଁ ଅପୂର୍ବ ସ୍ୱାର୍ଥତ୍ୟାଗର ଦୃଷ୍ଟାନ୍ତ ଦେଖାଇଥିଲେ, ତାହା ସହଜରେ ବର୍ଣ୍ଣନା କରିହେବନାହିଁ । ଦୁର୍ଭିକ୍ଷ ସମୟରେ ବିପନ୍ନ ନରନାରୀଙ୍କୁ ସାହାଯ୍ୟ କରିବାପାଇଁ ସରକାରର ଯେଉଁ ସବୁ ବ୍ୟବସ୍ଥାମାନ ରହିଛି, ତହିଁର ପ୍ରଚଳନ ନିମିତ୍ତ ତିଳକ ମହାରାଜ ବୋମ୍ବେ ସରକାରଙ୍କୁ ବିଶେଷ ଅନୁରୋଧ କରିଥିଲେ, କିନ୍ତୁ ତାଙ୍କର ଅନୁରୋଧ ସରକାର ରକ୍ଷା କଲେ ନାହିଁ । ତେଣୁ ସେ ବିପନ୍ନ ଲୋକଙ୍କର ବିପଦ ନିବାରଣ ପାଇଁ ନିଜେ ଅଣ୍ଟା ଭିଡ଼ି ବାହାରି ପଡ଼ିଲେ । ସେ ପୁନାରେ ସ୍ୱଳ୍ପ ମୂଲ୍ୟରେ ଖାଦ୍ୟଦ୍ରବ୍ୟାଦି ବିକ୍ରୟ ଓ ଅନ୍ନଛତ୍ରର ବ୍ୟବସ୍ଥା କଲେ । ତିଳକଙ୍କର ଏଭଳି ବ୍ୟବସ୍ଥା ଠିକ୍ ଏହି ସମୟରେ ହୋଇ ନ ଥିଲେ ନାନା ଗୋଳମାଳ ଉପସ୍ଥିତ ହୋଇ ପାରିଥାନ୍ତା । ଶୋଲାପୁର ଓ ନାଗର ନାମକ ସ୍ଥାନର ଦୁରବସ୍ଥା ଜାଣିପାରି ନିଜେ ସେ ସ୍ଥାନମାନଙ୍କୁ ଯାଇଥିଲେ ଏବଂ ସ୍ଥାନୀୟ ନେତା ଓ କର୍ମୀମାନଙ୍କ ସଙ୍ଗେ ପରାମର୍ଶ କରି ଓ ସରକାରୀ କର୍ମଚାରୀମାନଙ୍କ ସଙ୍ଗେ ମିଳିମିଶି ବିପନ୍ନ ବ୍ୟକ୍ତିମାନଙ୍କ ପାଇଁ ସାହାଯ୍ୟର ବ୍ୟବସ୍ଥା କରିଥିଲେ । ଯୁକ୍ତପ୍ରଦେଶ ଦୁର୍ଭିକ୍ଷ ବେଳେ, ସେତେବେଳର ଗଭର୍ଣ୍ଣର, ଦୁର୍ଭିକ୍ଷ ନିବାରଣ ପାଇଁ ଯେଉଁ ପ୍ରଣାଳୀ ଅନୁଯାୟୀ କାର୍ଯ୍ୟ କରି ସଫଳତା ଲାଭ କରିଥିଲେ, ତିଳକ ମହାରାଜ ଶୋଲାପୁର ଅଞ୍ଚଳପାଇଁ ଠିକ୍ ସେହିଭଳି ବ୍ୟବସ୍ଥା କରିବାକୁ ବୋମ୍ବେ ସରକାରଙ୍କୁ ଜଣାଇଥିଲେ । କିନ୍ତୁ ତିଳକଙ୍କର କାର୍ଯ୍ୟକଳାପ ପ୍ରତି ବୋମ୍ବେ ସରକାରର ସହାନୁଭୂତି ନଥିବାରୁ ସରକାର ତିଳକଙ୍କ ପ୍ରସ୍ତାବ ଗ୍ରହଣ

କଲେ ନାହିଁ । ତାଙ୍କର ଅନ୍ୟାନ୍ୟ ପ୍ରସ୍ତାବମାନ ମଧ୍ୟ ଏହିପରି ସରକାରଙ୍କ ଦ୍ୱାରା ଉପେକ୍ଷିତ ହେଲା । ପୁନା ସାର୍ବଜନୀକ ସଭାର ଆନ୍ଦୋଳନ ଯୋଗୁଁ ବୋମ୍ବେ ସରକାର ତିଲକଙ୍କ ଉପରେ ପୂର୍ବରୁ ଅସନ୍ତୁଷ୍ଟ ଥିଲେ । ତିଲକ ସେତେବେଳେ ଏହି ସଭର ପ୍ରଧାନ ପୃଷ୍ଟପୋଷକ । ଦୁର୍ଭିକ୍ଷ ସମୟରେ ଦେଶବାସୀ ସରକରାର ଆଇନାନୁଯାୟୀ ସାହାଯ୍ୟ ପାଇବାପାଇଁ ହକ୍‌ଦାର, ଏ ଦାବୀ ତିଲକ ମହାରାଜ ଦୃଢ଼ ଭାବରେ ଘୋଷଣା କରୁଥିଲେ ଏବଂ ସଙ୍ଗେ ସଙ୍ଗେ ଦୁର୍ଭିକ୍ଷ ପ୍ରପୀଡ଼ିତ ଅଞ୍ଚଳ ଲୋକଙ୍କର ଅଭାବ, ଅଭିଯୋଗ ସରକାରର କର୍ଣ୍ଣଗୋଚର କରାଉଥିଲେ ।

ପୁନାରେ ପ୍ଲେଗ ଉପସ୍ଥିତ ହେବା ମାତ୍ରେ ସହରର ଅଧିକାଂଶ ବିଶିଷ୍ଟ ଲୋକ ସହର ଲୋକଙ୍କୁ ନିଜ ଭାଗ୍ୟ ଉପରେ ନିର୍ଭର କରିବାକୁ ଦେଇ ସ୍ଥାନ ତ୍ୟାଗ କରି ପଳାଇଲେ । କିନ୍ତୁ ଲୋକମାନ୍ୟ ତିଲକ ତାହା କରି ନଥିଲେ । ସେ ସେବାକାର୍ଯ୍ୟ ପାଇଁ ସ୍ୱେଚ୍ଛାସେବକ ମାନଙ୍କୁ ସଂଗଠିତ କରିବାକୁ ଲାଗିଲେ । ଡ଼ାକ୍ତରୀ ଚିକିତ୍ସା ଲାଗି ଏକ ଡାକ୍ତରଖାନା ପ୍ରତିଷ୍ଠା କଲେ ଏବଂ ଯେଉଁ ସରକାରୀ କର୍ମଚାରୀମାନେ ଜନସାଧାରଣଙ୍କ ସ୍ୱାସ୍ଥ୍ୟ ବିଧାନ ଓ ଅନ୍ୟାନ୍ୟ ବିଷୟରେ ଉଦାସୀନ ରହି ଅମାନୁଷିକ ବ୍ୟବହାର ଦେଖାଉଥିଲେ । ସେମାନଙ୍କ ବିଷୟରେ ଲୋକଙ୍କ ଧାରି ଗୁହାରି ସରକାରଙ୍କ ଦୃଷ୍ଟିକୁ ଆଣୁଥିଲେ ।

ଡାକ୍ତରଖାନା ପାଇଁ ଆବଶ୍ୟକୀୟ ପାଣ୍ଠି ସଂଗ୍ରହ ନିମନ୍ତେ ତାଙ୍କୁ ଅନେକ ଦିନ ପର୍ଯ୍ୟନ୍ତ ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିଥିଲା । ତିଲକ ମହାରାଜ ରୋଗାକ୍ରାନ୍ତ ଗ୍ରାମମାନଙ୍କୁ ଯାଇ ପ୍ରତ୍ୟେକ ଗ୍ରାମର ଅବସ୍ଥା ସ୍ୱଚକ୍ଷୁରେ ଦେଖି ପ୍ଲେଗର ଭୟଙ୍କର ଆକ୍ରମଣରୁ ଲୋକଙ୍କୁ ରକ୍ଷା କରିବା ନିମନ୍ତେ ନାନାବିଧ ଉପାୟ ଅବଲମ୍ବନ କରିଥିଲେ । ପ୍ଲେଗାକ୍ରାନ୍ତ ସନ୍ଦେହ-ରେ ଯେଉଁମାନଙ୍କୁ ସହରବାସୀଙ୍କଠାରୁ ଦୂରରେ ରଖାଯାଉଥିଲା, ତିଲକ

ସେମାନଙ୍କ ପାଇଁ ଏକ ଅନ୍ନଛତ୍ର ସ୍ଥାପନ କରିଥିଲେ । ଏହିସବୁ କାର୍ଯ୍ୟରୁ ତିଲକ ମହାରାଜଙ୍କର ପ୍ରଗାଢ଼ ଦେଶପ୍ରେମର ପରିଚୟ ପାଇ ଦେଶର ଦରିଦ୍ର ଜନସାଧାରଣ ତାଙ୍କୁ ଦେବତାରୂପେ ଭକ୍ତି କରିବାକୁ ଲାଗିଲେ ।

---

## ଗଣପତି ଉତ୍ସବ

ଲୋକମାନ୍ୟ ତିଲକ ବାର୍ଷିକ ଗଣପତି ଉତ୍ସବ ଆରମ୍ଭ କରି ଏହାକୁ ଗଣପୂଜାର ରୂପ ଦେଇଥିଲେ । ଏହି ଉତ୍ସବବେଳେ ମହାରାଷ୍ଟ୍ରର ସମସ୍ତ ନଗର ଓ ସହରମାନଙ୍କରେ ୧୦ ଦିନ ପର୍ଯ୍ୟନ୍ତ ଭାଷଣ, ଗୀତ, ନାଟ, ଅଭିନୟ ଓ ପୂଜା ଆଦି ମହୋତ୍ସବ ଚାଲେ । ଏହା ଫଳରେ ଚିତ୍ତ ବିନୋଦନ ସହିତ ଜନସାଧାରଣଙ୍କ ଭିତରେ ଐକ୍ୟବୋଧ ଆଣିବା ସଙ୍ଗେ ସଙ୍ଗେ ଯଥାର୍ଥ ଶିକ୍ଷାର ସୂତ୍ରପାତ ଘଟେ । ଗଣପତି ବିସର୍ଜନ ଅବସରରେ ସେ ନିଜେ ଲୋକଙ୍କ ଶୋଭାଯାତ୍ରାରେ ଯୋଗ ଦିଅନ୍ତି । ଗଣପତି ବିସର୍ଜନ ଶୋଭାଯାତ୍ରା ଦିନ ସେ ବିରାଟ ଶୋଭାଯାତ୍ରାର ମଧ୍ୟସ୍ଥଳରେ ଆପାଦମସ୍ତକ ଅବିର ରଙ୍ଗରେ ଖୁବ୍ ଲିପ୍ତ ହୋଇ ଯାଉଥିବାର ଶୁଣାଯାଏ । ସେ ଲୋକଙ୍କ ଭିତରେ ଜଣେ ଏବଂ ଲୋକେ ତାଙ୍କୁ ସାହସୀ ନିର୍ଭୀକ ନେତା ହିସାବରେ ସମ୍ମାନ କରନ୍ତି । ତିଲକହିଁ ବାର୍ଷିକ ଶିବାଜି ଉତ୍ସବ ଆରମ୍ଭ କରିଥିଲେ । ଏ ଉତ୍ସବ ମଧ୍ୟ ସମଗ୍ର ମହାରାଷ୍ଟ୍ରରେ ଓ ବାହାରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ମାନଙ୍କରେ ମଧ୍ୟ ଅନୁରୂପ ଭାବରେ ପାଳିତ ହୁଏ ।

---

# ଶିବାଜୀ ସ୍ମୃତିପୂଜା

ମରହଟ୍ଟା ଜନସାଧାରଣଙ୍କ ମଧ୍ୟରେ ଜାତୀୟ-ଭାବ ଉଦ୍ରେକ ଓ ସଙ୍ଗଠିତ କରିବା ଓ ଜାତିକୁ ଉନ୍ନତ ପଥରେ ପରିଚାଳିତ କରିବା ଉଦ୍ଦେଶ୍ୟରେ ଲୋକମାନ୍ୟ ତିଲକ 'ଶିବାଜୀ ସ୍ମୃତି ପୂଜା' ଆରମ୍ଭ କରିଥିଲେ । ଜାତୀୟ ଦେଶ ନେତାମାନଙ୍କର ଜୀବନ ଚରିତ ଆଲୋଚନା ଓ ଜାତୀୟ ନେତାମାନଙ୍କର ସ୍ମୃତିରକ୍ଷା ଜାତୀୟ ଜୀବନ ଗଠନରେ ଯେ କେତେଦୂର ସହାୟତା କରେ, ତାହାର ଉପଯୋଗୀତା ଭଲଭାବେ ହୃଦୟଙ୍ଗମ କରି ତିଲକ ଏହିଭଳି ପ୍ରତିଭା ପୂଜାର ବ୍ୟବସ୍ଥା କରିଥିଲେ । ଶିବାଜୀ ସ୍ମୃତି ପୂଜାରେ ସେ ମରହଟ୍ଟା ଜାତିକୁ ଉଦ୍‌ବୁଦ୍ଧ କରିଥିଲେ ଏବଂ ପ୍ରତିଭା ପୂଜାର ଉତ୍କୃଷ୍ଟ ଉପାଦାନ ତାଙ୍କୁ ଏଥିରେ ମିଳିଥିଲା । ଭାରତେଶ୍ୱର ଶିବାଜୀଙ୍କ ମୂର୍ତ୍ତିପୂଜା ନାମରେ ପ୍ରତିବର୍ଷ ବାର୍ଷିକ ଉତ୍ସବ ଉଦ୍ଦେଶ୍ୟରେ 'ଶିବାଜୀ ଦିବସ' ନାମକ ଏକ ଦିବସ ସ୍ଥିର ହେଲା ଏବଂ ଶିବାଜୀଙ୍କ ସମାଧି ଉପରେ ଏକ ସ୍ମୃତିସ୍ତମ୍ଭ ନିର୍ମିତ ହେଲା । ଶିବାଜୀଙ୍କର ଅଭିଷେକ ଉତ୍ସବକୁ ଚିରସ୍ମରଣୀୟ କରିବା ଉଦ୍ଦେଶ୍ୟରେ ୧୮୯୭ ମସିହା ଜୁନ ମାସ ୧୩ ତାରିଖରେ ମହାଆଡ଼ମ୍ବର ପୂର୍ଣ୍ଣ ଏକ ମହୋତ୍ସବ ଅନୁଷ୍ଠିତ ହୋଇଥିଲା । ଏହି ଉତ୍ସବୋପଲକ୍ଷେ ଯେଉଁ ଉଦ୍ଦୀପନା ପୂର୍ଣ୍ଣ ସଙ୍ଗୀତମାନ ବୋଲା ଯାଇଥିଲା, ଉତ୍ସବର ୫ ଦିନ ପରେ ସେଗୁଡ଼ିକ କେଶରୀ ପତ୍ରିକାରେ ପ୍ରକାଶିତ ହୋଇ-ଥିଲା । ସେହି ବର୍ଷ ଜୁଲାଇ ତା ୨୨ ରିଖରେ କେତେଜଣ ଭାରତୀୟ ଦୁଇ ଜଣ ବଶିଷ୍ଟ ସାହେବଙ୍କୁ ଗୁଳି କରି ନିହତ କଲେ । ଭାରତର ସାହେବ ସମ୍ପ୍ରଦାୟ ଓ ସରକାର ମନେ କଲେ ଯେ କେଶରୀରେ ପ୍ରକାଶିତ ପ୍ରବନ୍ଧ ପାଠରେ ଉତ୍ତେଜିତ ହୋଇ ଲୋକେ ଏଭଳି ହତ୍ୟାକାଣ୍ଡ ଘଟାଇ ଅଛନ୍ତି । ଏହି ଅଭିଯୋଗରେ ସେପ୍‌ଟେମ୍ବର ୧୯ ତାରିଖରେ ତିଲକ ମହାରାଜାଙ୍କୁ ଗିରଫଦାର କରାଗଲା । ଜାମିନରେ ସୁଦ୍ଧା ତାଙ୍କୁ ଛାଡ଼ିବାକୁ ମାଜିଷ୍ଟ୍ରେଟ

ଅନୁମତି ଦେଲେ ନାହିଁ । ତିଲକ ମହାରାଜ ଏଥିରେ ନିରାଶ ନ ହୋଇ ହାଇକୋର୍ଟରେ ଦରଖାସ୍ତ କଲେ । ହାଇକୋର୍ଟରେ ମଧ୍ୟ ଜାମିନ ନାମଞ୍ଜୁର ହେଲା । ମୋକଦ୍ଦମା ବିଚାର ପାଇଁ ଅଗଷ୍ଟ ମାସ ୨ ତାରିଖ ଧାର୍ଯ୍ୟ ହେଲା । ତିଲକ ମହାରାଜଙ୍କୁ ଜାମିନରେ ଖଲାସ ଦେବାପାଇଁ ପୁନର୍ବାର ଦରଖାସ୍ତ ମଧ୍ୟ କରାଗଲା ।

ତତ୍କାଳୀନ ବିଚାରପତି ଜଷ୍ଟିସ୍ ଷ୍ଟ୍ରାଚିଙ୍କ ଇଂଲଣ୍ଡ ପ୍ରଚଳିତ ଆଇନାନୁଯାୟୀ ତାଙ୍କୁ ଜାମିନରେ ଖଲାସ ଦେଲେ । ମୋକଦ୍ଦମାର ବିଚାର ପାଇଁ ଛଅଜଣ ସାହେବ ଓ ତିନିଜଣ ଦେଶୀ ହାକିମଙ୍କୁ ନେଇ ଏକ ସ୍ୱତନ୍ତ୍ର ଟ୍ରିବ୍ୟୁନାଲ ବସିଲା । ଦେଶୀ ହାକିମମାନେ ତିଲକ ନିର୍ଦ୍ଦୋଷ ବୋଲି ମତ ଦେଇଥିଲେ । ମାତ୍ର ସାହେବମାନେ ତିଲକ ଦୋଷୀ ବୋଲି ମତ ଦେବାରୁ ତିଲକ ମହାରାଜଙ୍କୁ ୧୮ ମାସ ସଶ୍ରମ କାରାଦଣ୍ଡର ଆଦେଶ ହୋଇଥିଲା ।

---

## ଜେଲ ମୁକ୍ତି

ତିଲକ ମହାରାଜଙ୍କର ଜେଲଦଣ୍ଡ ପାଇଁ ପ୍ରିଭିକାଉନ୍‌ସିଲରେ ଅପିଲ କରାଯାଇଥିଲା । ବିଖ୍ୟାତ ବାରିଷ୍ଟର ମିଃ ଆଇସ୍‌କୁଇଥ (ପରେ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ) ତିଲକଙ୍କ ପକ୍ଷ ସମର୍ଥନ କରିଥିଲେ । ମନ୍ତ୍ରୀ ସଙ୍ଘର ଅନ୍ୟତମ ସଭ୍ୟ ଲର୍ଡ଼ ହାଲସବାରି ପ୍ରିଭିକାଉନ୍‌ସିଲରେ ତିଲକଙ୍କର ବିଚାର କରିଥିଲେ । ମିଃ ଆସକୁଇଥ, ଜୁଷ୍ଟମାନଙ୍କର ତିଲକଙ୍କ ପ୍ରତି ଭ୍ରାନ୍ତ ଧାରଣା ସମ୍ବନ୍ଧରେ ଅନେକ ବୁଝାଇଥିଲେ କିନ୍ତୁ କିଛି ଫଳ ହେଲା ନାହିଁ । ସର୍ବୋଚ୍ଚ ବିଚାରାଳୟରେ ବିଚାର ଫଳ ବ୍ୟର୍ଥ ହେବାର ଦେଖି ଅବଶେଷରେ ଅଧ୍ୟାପକ

ମାକ୍ସମୁଲର ଓ ଉଇଲସ୍ସନ ହଣ୍ଟର ପ୍ରମୁଖ ତିଳକଙ୍କର ଇଉରୋପୀୟ ସାହିତ୍ୟିକ ବନ୍ଧୁମାନେ ତାହାଙ୍କର ଅଦ୍ଭୁତ ପାଣ୍ଡିତ୍ୟ କଥା ଉଲ୍ଲେଖ କରି ମହାରାଣୀ ଭିକ୍ଟୋରିୟାଙ୍କ ନିକଟରେ ଆବେଦନ କରିଥିଲେ । "ତିଳକ ଜଣେ ମହାପଣ୍ଡିତ, ତାଙ୍କୁ ଜେଲ ଦେବା ନିତାନ୍ତ ଅନୁଚିତ" ବୋଲି ମହାରାଣୀ ଭିକ୍ଟୋରିୟା ବୁଝି ପାରି ୧୮୯୮ ମସୀହା ସେପ୍ଟେମ୍ବର ତା ୬ ରିଖରେ ତାଙ୍କୁ ମୁକ୍ତ ଦେଲେ । ତିଳକ ମହାରାଜ କାରାମୁକ୍ତ ହୋଇ ପୁଣି ଦ୍ୱିଗୁଣ ଉତ୍ସାହରେ କାମରେ ଲାଗି ପଡ଼ିଲେ । ଜେଲ ଅବସ୍ଥାନ ବେଳେ ତିଳକ ମହାରାଜ ଉତ୍ତରମେରୁରେ ବୈଦିକନିବାସ (our Arctic homes in the vedas) ନାମକ ଏକ ଉପାଦେୟ ଗ୍ରନ୍ଥ ଲେଖିଥିଲେ । ଏହି ଗ୍ରନ୍ଥରେ ସେ ନାନା ସୁଯୁକ୍ତିତର୍କ ଦେଖାଇ ପ୍ରମାଣ କରିଥିଲେ ଯେ ପ୍ରାଚୀନ ଆର୍ଯ୍ୟମାନଙ୍କର ଆଦିମ ବାସସ୍ଥାନ ଉତ୍ତରମେରୁରେ ଥିଲା । ଯେତେବେଳେ ସେଠାରେ ବରଫ ପଡୁନ ଥିଲା ଏବଂ ଯେ ସ୍ଥାନର ଜଳବାୟୁ ନାତିଶୀତୋଷ୍ଣ ଓ ମନୋରମ ଥିଲା । ସେଥିପାଇଁ ମେରୁଅଞ୍ଚଳ ବସବାସ ପାଇଁ ସମ୍ପୂର୍ଣ୍ଣ ଉପଯୁକ୍ତ ଥିଲା । ଗ୍ରନ୍ଥଟି ୧୯୦୩ ମସୀହା ମାର୍ଚ୍ଚ ମାସରେ ପ୍ରକାଶିତ ହୋଇଥିଲା ।

ତିଳକଙ୍କର ମତ ଯେ ସମସ୍ତ ପଣ୍ଡିତ ସ୍ୱୀକାର କରି ନେଇଥିଲେ, ତାହା ନୁହେଁ, କିନ୍ତୁ ତିଳକ ମହାରାଜଙ୍କର ଏହି ମହାଗ୍ରନ୍ଥଟି ଇତିହାସ ଜଗତରେ ଏକ ନୂତନ ବିପ୍ଳବ ସୃଷ୍ଟି କରିଥିଲା ଏବଂ ତାଙ୍କର ଅସାଧାରଣ ପାଣ୍ଡିତ୍ୟ ଓ ଗବେଷଣା କୌଶଳର ପରିଚୟ ପାଇଁ ଜଗଦ୍‌ବାସୀ ମୁଗ୍ଧ ହୋଇ-ଯାଇଥିଲେ ।

---

## ତାଇ ମହାରାଜ ମୋକଦ୍ଦମା

୧୯୦୧ ମସୀହା ଜୁଲାଇ ମାସ ୨୯ ତାରିଖରେ ପୁନାର ଜିଲା ଜଜ୍‌ଙ୍କ କୋର୍ଟରେ ତିଳକଙ୍କ ନାମରେ ଗୋଟିଏ ବ୍ୟକ୍ତିଗତ ମୋକଦ୍ଦମା ଉପସ୍ଥିତ ହେଲା । ମୋକଦ୍ଦମାଟି ପ୍ରାୟ ୭ ବର୍ଷ ଗ୍ଲଲା । ତିଲକ ତାଇ ମହାରାଜ ନାମ୍ନୀ ଜନୈକ ମହାରାଷ୍ଟ୍ରୀୟ ବିଧବାଙ୍କର ପରଲୋକଗତ ସ୍ୱାମୀଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁଥିଲେ । ତାଙ୍କର ନାମ ଶ୍ରୀବାବା ମହାରାଜ । ମୃତ୍ୟୁ ପୂର୍ବରୁ ସେ ତିଲକ ମହାରାଜଙ୍କୁ ତାଙ୍କ ସମ୍ପତ୍ତିର ଜଣେ ଟ୍ରଷ୍ଟିରୂପେ ନିଯୁକ୍ତ କରି-ଯାଇଥିଲେ । ଟ୍ରଷ୍ଟି ହେଇ ତିଲକ ମହାରାଜ ତାଙ୍କ ବନ୍ଧୁଙ୍କ ସମ୍ପତ୍ତିର ରକ୍ଷଣାବେକ୍ଷଣ କରିବାକୁ ଲାଗିଲେ । ତିଲକ ପ୍ରଥମେ ୺ଶ୍ରୀବାବା ମହାରାଜଙ୍କ ଋଣ ପରିଶୋଧର ବ୍ୟବସ୍ଥା କରିଥିଲେ ଏବଂ ତାଙ୍କର ବିଧବା ପତ୍ନୀଙ୍କୁ ପୋଷ୍ୟପୁତ୍ର ଗ୍ରହଣ କରିବାପାଇଁ ପରାମର୍ଶ ଦେଇଥିଲେ । ତିଲକଙ୍କର ଶତ୍ରୁ-ମାନେ ତାଇ ମହାରାଜଙ୍କୁ ବୁଝାଇଦେଲେ ସେ ତିଲକ ତାଙ୍କର ସମ୍ପତ୍ତିର ଅପ-ବ୍ୟବହାର କରୁଛନ୍ତି । ଦୁଷ୍ଟଲୋକଙ୍କ କୁପରାମର୍ଶରେ ପଡ଼ି ତାଇ ମହାରାଜ ପୁନାର ଜିଲା ଜଜ୍‌ଙ୍କ କୋର୍ଟରେ ତିଲକ ଓ ଅନ୍ୟାନ୍ୟ ଟ୍ରଷ୍ଟିମାନଙ୍କ ବିରୁଦ୍ଧରେ ଉଇଲ ରଦ୍ କରିବା ସମ୍ପର୍କରେ ଏକ ମୋକଦ୍ଦମା ଦାଏର କରିଥିଲେ । ତିଲକଙ୍କ ପ୍ରତି ପୁନା ସରକାରଙ୍କର ଶୁଭଦୃଷ୍ଟି ତ ଆଦୌ ନ ଥିଲା । ଫଳରେ ଜିଲା ଜଜ୍ ଉଇଲ ରଦ୍ କରି ସେ କ୍ଷାନ୍ତ ରହିଲେ ତାହା ନୁହେଁ, ପରନ୍ତୁ ଜାଲ, ପ୍ରବଞ୍ଚନା, ମିଥ୍ୟା ସାକ୍ଷ୍ୟ ପ୍ରଭୃତି ସାତୋଟି ଅଭିଯୋଗ ତିଲକଙ୍କ ବିରୁଦ୍ଧରେ ଆଣିଥିଲେ । ହାଇକୋର୍ଟ ଅପିଲରେ ଉଇଲ ପ୍ରୋବେଟ୍ ଯଥାର୍ଥ ବୋଲି ପ୍ରମାଣିତ ହେଲା ସତ୍ୟ, କିନ୍ତୁ ତିଲକ ମୋକଦ୍ଦମାରୁ ଅବ୍ୟାହତି ପାଇଲେ ନାହିଁ । ପୁନାର ଜିଲା ମାଜିଷ୍ଟ୍ରେଟ ତିଲକଙ୍କୁ ୧୮ ମାସ କାରାଦଣ୍ଡରେ ଦଣ୍ଡିତ କରିଥିଲେ । ଅପିଲରେ ଦଣ୍ଡ ହ୍ରାସ ହୋଇ ୬ ମାସ ହେଲା ଏବଂ ତିଲକଙ୍କ ଚରିତ୍ର ଯେ ନିଷ୍କଳଙ୍କ, ତାହା ପ୍ରମାଣିତ ହେଲା । ହାଇକୋର୍ଟ

ଅପିଲରେ ତିଳକ ନର୍ଦ୍ଦୋଷରେ ଖଲାସ ହେଲେ । ଏହି ସାମାନ୍ୟ ବ୍ୟକ୍ତିଗତ ମୋକଦ୍ଦମାରେ ତିଳକଙ୍କର ଶାରୀରିକ ଓ ମାନସିକ ଶକ୍ତି ବହୁ ପରିମାଣରେ କ୍ଷୟ ହୋଇ ଯାଇଥିଲା । ଏହା ଛଡ଼ା ତାଙ୍କର ବହୁମୂଲ୍ୟ ସମୟ ଅଯଥା ନଷ୍ଟ ହୋଇଥିଲା ଏବଂ ଅନେକ ଅର୍ଥ ମଧ୍ୟ ବ୍ୟୟିତ ହୋଇଥିଲା ।

ଶେଷରେ ତିଳକ ମହାରାଜ ମୋକଦ୍ଦମାରେ ଜୟଲାଭ କରିବାରୁ ତାଙ୍କର ବନ୍ଧୁମାନେ ଆଶ୍ୱସ୍ତ ହେଲେ । ଏହି ମୋକଦ୍ଦମାରେ ତିଳକଙ୍କୁ ଥରେମାତ୍ର ଅବସନ୍ନ ହେବାର ଦେଖାଯାଇ ନ ଥିଲା । ସେ ସର୍ବଦା ମସ୍ତିଷ୍କ ଠିକ୍ ରଖି ଧୀରସ୍ଥିର ଭାବରେ କାର୍ଯ୍ୟ କରୁଥିଲେ । ତାଙ୍କର ବନ୍ଧୁଗଣ ବା ଓକିଲମାନେ ସାମୟିକ ବିଚଳିତ ହେଉଥିଲେ ସେ ସେମାନଙ୍କୁ ସାନ୍ତ୍ୱନା ଦେଉଥିଲେ । ତିଳକ ମହାରାଜ ଏପରି ଭାବରେ ମୋକଦ୍ଦମା ଚଳାଉଥିଲେ ଯେ ଏହି ସମୟରେ ବୈଦିକ ଗବେଷଣାରେ ମଧ୍ୟ ସେ ଯଥେଷ୍ଟ ସମୟ ଦେଇ ପାରୁଥିଲେ । ତାଇ ମହାରାଜ ମୋକଦ୍ଦମାରେ ଦେଶବାସୀ ତାଙ୍କର ଅପୂର୍ବ ଚରିତ୍ରର ପରିଚୟ ପାଇଥିଲେ । ଏକ ଦିଗରେ ଏକ ରମଣୀର ସ୍ୱାର୍ଥ ଏବଂ ଅନ୍ୟ ଦିଗରେ ବୋମ୍ବେ ସରକାରର କୋପଦୃଷ୍ଟି ତିଳକ ମହାରାଜଙ୍କ ବିରୁଦ୍ଧରେ କାର୍ଯ୍ୟ କରୁଥିଲା ।

---

## କଂଗ୍ରେସରେ ଚରମପଂଥୀ

ଲୋକମାନ୍ୟ ତିଳକ କଂଗ୍ରେସର ପ୍ରାରମ୍ଭରୁ କଂଗ୍ରେସ ସହିତ ସଂପୃକ୍ତ ଥିଲେ । ସେ ପ୍ରତିବର୍ଷ କଂଗ୍ରେସରେ ଯୋଗ ଦେଉଥିଲେ । ୧୮୮୫ ମସିହା ବମ୍ବେ କଂଗ୍ରେସର ବିଷୟ ନିର୍ବାଚନ ସମିତିର ସଭ୍ୟମାନଙ୍କ ମଧ୍ୟରେ ତିଳକଙ୍କ ନାମ ଦେଖିବାକୁ ମିଳେ । ଏହି ଅଧିବେଶନରେ ସେ ବ୍ୟବସ୍ଥାପକ

ସଭା ସମ୍ବନ୍ଧୀୟ ପ୍ରସ୍ତାବ ସମର୍ଥନ କରିଥିଲେ । ନାଗପୁର କଂଗ୍ରେସର ସପ୍ତମ ଅଧିବେଶନରେ ଅସ୍ତ୍ର-ଆଇନ ବିଷୟକ ପ୍ରସ୍ତାବ ବିରୁଦ୍ଧରେ ଘୋର ଆପତ୍ତି ଉତ୍ଥାପନ କରିଥିଲେ । ଲାହୋର କଂଗ୍ରେସର ନବମ ଅଧିବେଶନରେ ଚିରସ୍ଥାୟୀ ବନ୍ଦୋବସ୍ତ ସମ୍ବନ୍ଧୀୟ ପ୍ରସ୍ତାବ ସମର୍ଥନ କରିଥିଲେ । ପୁନା କଂଗ୍ରେସର ଏକାଦଶ ଅଧିବେଶନରେ ପ୍ରଜାସ୍ୱତ୍ୱ ସମ୍ପର୍କୀୟ ପ୍ରସ୍ତାବ ସମ୍ବନ୍ଧରେ ବକ୍ତୃତା ଦେଇଥିଲେ ଏବଂ କଲିକତା କଂଗ୍ରେସର ଦ୍ୱାଦଶ ଅଧିବେଶନରେ ପ୍ରାଦେଶିକ ଗଭର୍ଣ୍ଣମେଣ୍ଟମାନଙ୍କୁ ରାଜସ୍ୱ ବିଷୟରେ ଅଧିକତର ଦାୟିତ୍ୱ ଓ ସ୍ୱାଧୀନତା ଦେବାପାଇଁ ପ୍ରସ୍ତାବ କରିଥିଲେ । ୧୯୦୫ ମସିହା ବନାରସ କଂଗ୍ରେସରେ ତିଳକ ମହାରାଜାଙ୍କୁ ମହାସମାରୋହରେ ଅଭ୍ୟର୍ଥନା କରାଯାଇଥିଲା । ଏହିବର୍ଷ କଂଗ୍ରେସରେ ତିଳକ ମହାରାଜ ଭାରତର ଦୁର୍ଭିକ୍ଷ, ଦାରିଦ୍ର୍ୟ ଓ ଅର୍ଥନୈତିକ ଅବସ୍ଥା ସମ୍ବନ୍ଧରେ ଅନୁସନ୍ଧାନ ଓ ଭାରତୀୟ ବନ୍ଦୋବସ୍ତ ସମ୍ବନ୍ଧରେ ନିଜର ବକ୍ତୃତା ଦ୍ୱାରା ସମସ୍ତଙ୍କୁ ମୁଗ୍ଧ କରିଥିଲେ । କଂଗ୍ରେସର ଏହି ଅଧିବେଶନରେ 'ବିଲାତି ବର୍ଜ୍ଜନ' ପ୍ରସ୍ତାବ ଗୃହୀତ ହେବାଲାଗି ଲାଲା ଲାଜପତ୍ ରାୟ ଓ ତିଳକ ମହାରାଜ ଖୁବ୍ ଲଢ଼ିଥିଲେ ।

୧୯୦୬ ମସିହାରେ କଲିକତାରେ କଂଗ୍ରେସ ହେଲା । ବଙ୍ଗଳାର ଜାତୀୟଦଳର ନେତାମାନେ ଏହି କଂଗ୍ରେସରେ ଲୋକମାନ୍ୟ ତିଳକଙ୍କୁ ସଭାପତି କରିବାପାଇଁ ଚେଷ୍ଟା କରିଥିଲେ । କିନ୍ତୁ ମାଧ୍ୟାଦଳୀୟ ଲୋକେ ବିଲାତରୁ ଦାଦାଭାଇ ନରୋଜୀଙ୍କୁ ଆଣାଇ ଜାତୀୟ ଦଳର ଚେଷ୍ଟା ବ୍ୟର୍ଥ କରିଥିଲେ । ଦାଦାଭାଇ ନରୋଜୀ ଏହି କଂଗ୍ରେସର ସଭାପତି ହୋଇଥିଲେ । କଲିକତା କଂଗ୍ରେସରେ ମଧ୍ୟ ଲୋକମାନ୍ୟ ତିଳକଙ୍କୁ ବିଶେଷଭାବେ ସମ୍ବର୍ଦ୍ଧନା କରାଯାଇ-ଥିଲା । ତିଳକ ମହାରାଜ ଏହି କଂଗ୍ରେସରେ 'ସ୍ୱଦେଶୀ ଆନ୍ଦୋଳନ' ପ୍ରସ୍ତାବ ସମ୍ପୂର୍ଣ୍ଣରୂପେ ସମର୍ଥନ କରିଥିଲେ । କିନ୍ତୁ ଭାରତର ରାଜନୀତି କ୍ଷେତ୍ରର ଶାନ୍ତି ଏହିଥର ନଷ୍ଟ ହେଲା । ବୈଧବିଦ୍ଧରାଜନୈତିକ ଆନ୍ଦୋଳନ ଉପରେ ଭାରତ-ବାସୀଙ୍କର ଯେ ଶ୍ରଦ୍ଧା ଓ ବିଶ୍ୱାସ ଥିଲା, ବଡ଼ଲାଟ ଲର୍ଡ଼ କର୍ଜ୍ଜନ ତାହାର

ମୂଳରେ କୁଠାରାଘାତ କଲେ । ବଙ୍ଗଅଙ୍ଗଚ୍ଛେଦ ପରେ ବଙ୍ଗଦେଶରୁ ଆରମ୍ଭ କରି ସମଗ୍ର ଭାରତବ୍ୟାପୀ ଯେପରି ବୃହତ୍ ଆନ୍ଦୋଳନ ଆରମ୍ଭ ହୋଇଥିଲା, ସେଥିରେ ସରକାରୀ କର୍ତ୍ତୃପକ୍ଷ ବିଚଳିତ ହୋଇ କଠୋରତମ ଦମନନୀତିର ଆଶ୍ରୟ ନେଇଥିଲେ ।

ସଭା ସମିତି କରିବା ସାଧାରଣତଃ ବନ୍ଦ ହେଲା । ଲାଲା ଲଜପତ୍ ରାୟ ଓ ସର୍ଦ୍ଦାର ଅଜିତ ସିଂହ ପ୍ରମୁଖ ଭାରତର ମାନ୍ୟଗଣ୍ୟ ନେତାମାନଙ୍କୁ ବର୍ମା ଦେଶରେ ନିର୍ବାସନ କରାଗଲା । ଯେଉଁମାନେ ରାଜନୈତିକ କ୍ଷେତ୍ରରୁ ସମ୍ପୂର୍ଣ୍ଣ ଅଲଗା ହୋଇ ରହିଥିଲେ, ଏହି ସବୁ ଘଟଣାରେ ସେମାନେ ମଧ୍ୟ ବିଚଳିତ ହୋଇପଡ଼ିଲେ । ଏହି ଆନ୍ଦୋଳନ ଫଳରୁ ଭାରତର ଦଳେ ରାଜନୀତିକ ପୁରାତନ 'ଆବେଦନ-ନିବେଦନ' ପନ୍ଥା ପରିତ୍ୟାଗ କଲେ । ରାଜନୈତିକ ଯୁଦ୍ଧକ୍ଷେତ୍ରରେ ସେମାନେ ଦୃଢ଼ତର ଓ ପ୍ରବଳତର ଅସ୍ତ୍ର ପ୍ରୟୋଗର ପକ୍ଷପାତୀ ହେଲେ । ଅନେକେ ରାଜନୈତିକ ଆନ୍ଦୋଳନର ପୁରାତନ ପ୍ରଥା ପରିତ୍ୟାଗ କରିବାକୁ ଲାଗିଲେ । ଭାରତର ଏହି ନବଗଠିତ ଚରମ ପନ୍ଥୀ ଓ ନରମ ପନ୍ଥୀ ମଧ୍ୟରେ ବିଭିନ୍ନ ଦଳର ସୃଷ୍ଟି ହେଲା । ଏହି ଦଳ ସୃଷ୍ଟି ଏପରି ଭୟଙ୍କର ଆକାର ଧାରଣ କଲା ଯେ ଶେଷରେ ସୁରାଟ କଂଗ୍ରେସରେ ଉଭୟ ଦଳ ମଧ୍ୟରେ ଘୋର ମତାନ୍ତର ଓ ମନାନ୍ତର ଘଟି ମାରପିଟ୍ ପର୍ଯ୍ୟନ୍ତ ହୋଇଥିଲା । କଂଗ୍ରେସ ମଣ୍ଡପ ଦକ୍ଷଯଜ୍ଞରେ ପରିଣତ ହୋଇଥିଲା । ଫଳରେ କଂଗ୍ରେସ ଭାଙ୍ଗିଗଲା । ଯେଉଁମାନେ କଂଗ୍ରେସର ପରମଭକ୍ତ, ସେମାନଙ୍କ ମଧ୍ୟରେ ଯେ ଏଭଳି ମତଭେଦ ଘଟିପାରେ, ଏହା ବାହାରର ଯେ କୌଣସି ଲୋକପକ୍ଷରେ ଆଶ୍ଚର୍ଯ୍ୟର ବିଷୟ ସତ୍ୟ, କିନ୍ତୁ ଯେଉଁମାନେ ସେତେବେଳର ରାଜନୈତିକ ଅବସ୍ଥା କଥା ଭଲ କରି ଜାଣୁଥିଲେ, ସେମାନଙ୍କ ନିକଟରେ ଏଥିରେ କିଛି ନୂତନତ୍ୱ ନ ଥିଲା । ଭାରତର ରାଜନୀତିଜ୍ଞମାନଙ୍କ ମଧ୍ୟରୁ ଯେଉଁମାନେ ତଦାନୀନ୍ତନ ପୁରାତନ ପ୍ରଥା ଅନୁସରଣ କରିବାକୁ ଇଚ୍ଛୁକ ଥିଲେ, ଏବଂ ଯେଉଁମାନେ ନୂତନ ପନ୍ଥା ଅବଲମ୍ବନ କରିବାକୁ ଦୃଢ଼ପ୍ରତିଜ୍ଞ ହୋଇଥିଲେ—

ଏହି ଉଭୟ ଦଳର ମାନସିକ ଅବସ୍ଥା ମଧ୍ୟରେ ଏପରି ପାର୍ଥକ୍ୟ ଦେଖାଯାଉଥିଲା ଯେ, ଯେ କୌଣସି ମୁହୂର୍ତ୍ତରେ ମତଭେଦର ଆଶଙ୍କା ହେଉଥିଲା । ଭାରତର ରାଜନୈତିକ କ୍ଷେତ୍ରର ଏହି ସଙ୍କଟ ବେଳେ ଲୋକମାନ୍ୟ ତିଳକ ଚରମ ପନ୍ଥୀଙ୍କର ନେତୃତ୍ୱ ଗ୍ରହଣ କରିଥିଲେ । ୧୯୦୮ ମସିହାରେ ମାନ୍ଦ୍ରାଜରେ କଂଗ୍ରେସ ହେଲା । ତିଳକ ମହାରାଜ ନାଗପୁରଠାରେ ଗୋଟିଏ ସ୍ୱତନ୍ତ୍ର କଂଗ୍ରେସ ଆହ୍ୱାନ କଲେ । କିନ୍ତୁ ସରକାର ନାଗପୁର କଂଗ୍ରେସ ପାଇଁ ଅନୁମତି ଦେଲେ ନାହିଁ । ତିଳକ ଏହି ସମୟରେ ଭାରତର ବିଭିନ୍ନ ପ୍ରଦେଶ ବୁଲି ରାଜନୈତିକ ଆନ୍ଦୋଳନ ଚଳାଇବାକୁ ଲାଗିଲେ ଏବଂ ସଙ୍ଗେ ସଙ୍ଗେ 'ନିଶା ନିବାରଣ' ଆନ୍ଦୋଳନ ମଧ୍ୟ ଆରମ୍ଭ କରିଥିଲେ ।

ତିଳକ ମହାରାଜ ଏହି ଆନ୍ଦୋଳନ ସାହାଯ୍ୟରେ ସରକାରର ଅବକାରୀ ନୀତିର ତୀବ୍ର ସମାଲୋଚନା କରିଥିଲେ ।

---

## ପୁଣି ତୃତୀୟ ଥର ଛ ବର୍ଷ ଜେଲ

ସୁରଟ କଂଗ୍ରେସର ଠିକ୍ ପରେ ଭାରତର ରାଜନୈତିକ କ୍ଷେତ୍ରରେ ଆଉ ଏକ ଭୟଙ୍କର ଘଟଣା ଘଟିଲା । ସରକାରର ଦମନନୀତିର କଠୋରତା ତିଳେମାତ୍ର ହ୍ରାସ ହେଲା ନାହିଁ । ବଙ୍ଗ-ଦେଶରେ ବିଦ୍ରୋହର ଚିହ୍ନ ଦେଖାଗଲା । ମୁଜାଫରପୁରଠାରେ ଏକ ବୋମାକାଣ୍ଡ ଘଟିଲା । ଜଣେ ଦୁଇଜଣଙ୍କୁ ମାରିବାକୁ ଯାଇ ବୋମା ଲକ୍ଷ୍ୟଭ୍ରଷ୍ଟ ହେବାରୁ ବୋମା ନିକ୍ଷେପ-କାରୀମାନେ ଦୁଇଟି ଇଂରେଜ ମହିଳାଙ୍କୁ ନିହତ କଲେ । ଏହି ଘଟଣାରେ ଭାରତର ସର୍ବତ୍ର ଚହଳ ପଡ଼ିଗଲା । ଭାରତୀୟ ଓ ଇଂରେଜ-ସମ୍ପାଦିତ ସମସ୍ତ ସମ୍ବାଦପତ୍ର ବିଦ୍ରୋହୀମାନଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ ନାନା ମନ୍ତବ୍ୟ ପ୍ରକାଶ

କରିବାକୁ ଲାଗିଲେ । ଭାରତୀୟ ସମସ୍ତ ସମ୍ବାଦପତ୍ରରେ ବିଦ୍ରୋହୀମାନଙ୍କ କାର୍ଯ୍ୟର ନିନ୍ଦାବାଦ କରାଯାଇଥିଲା । ତଥାପି ସେମାନେ କହୁଥିଲେ ଯେ ବିଦ୍ରୋହ ଦମନ ପାଇଁ ନୂଆ ନୂଆ କଡ଼ା ଆଇନ ଜାରୀ କରିବାର ଆବଶ୍ୟକ ନାହିଁ । ଦେଶରେ ଲୋକମତର ଅନୁକୂଳ କୌଣସିପ୍ରକାର ସୁବ୍ୟବସ୍ଥା କରି ବିଦ୍ରୋହୀମାନଙ୍କୁ ଶାନ୍ତ କରିବାପାଇଁ ଚେଷ୍ଟା କରିବା ସମୀଚୀନ । ଇଂରେଜୀ ସମ୍ବାଦପତ୍ରର ଇଂରେଜ ସମ୍ପାଦକମାନେ ସେତେବେଳେ ଖୁବ୍ ଉତ୍ତେଜିତ ହୋଇ ସରକାରର କଠୋରତମ ଦମନନୀତିର ସମର୍ଥନ କରୁଥିଲେ । ଠିକ୍ ସେହି ସମୟରେ କେଶରୀ ପତ୍ରିକାରେ ବିଦ୍ରୋହ ପ୍ରତିକାର ସମ୍ବନ୍ଧରେ କେତୋଟି ଧାରାବାହିକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ଏହି ପ୍ରବନ୍ଧ ମାନଙ୍କରେ ବୋମା ବ୍ୟବହାରର ସମର୍ଥନ କରାଯାଇଛି ବୋଲି ସରକାର ଘୋଷଣା କଲେ । ତିଳକ ମହାରାଜ କେଶରୀର ସମ୍ପାଦକ ବୋଲି ସରକାର ଆଗରୁ ଜାଣିଥିଲେ । ତେଣୁ ସଙ୍ଗେ ସଙ୍ଗେ ତାଙ୍କୁ ଗିରଫଦାରର ଆଦେଶ ଦିଆଗଲା । 'କାଲ' ନାମକ ଖବର କାଗଜର ସମ୍ପାଦକ ତିଳକ ମହାରାଜାଙ୍କର ଜଣେ ଘନିଷ୍ଠ ବନ୍ଧୁଥିଲେ । ସେ ମଧ୍ୟ ସରକାର ଆଦେଶରେ ଅଭିଯୁକ୍ତ ହେଲେ ।

ତିଳକ ମହାରାଜ ସେତେବେଳେ ବୋମ୍ବାଇରେ ଅବସ୍ଥାନ କରୁଥିଲେ । ଜୁନ ମାସ ୨୪ ତାରିଖ ସନ୍ଧ୍ୟା ୬ଟା ବେଳେ ତାଙ୍କୁ ଗିରଫଦାର କରାଗଲା । ଏତିକିରେ କିନ୍ତୁ ସରକାରର ମନବୋଧ ହେଲା ନାହିଁ । ତିଳକଙ୍କ ବାସଘର ମଧ୍ୟ ଖାନତଲାସ କରାଗଲା । ଶେଷୋକ୍ତ ଖାନତଲାସିରେ ପୁଲିସ ଝରକା ଭାଙ୍ଗି ଘର ଭିତରେ ପଶି ତିଳକଙ୍କର କେହି ଲୋକ ନ ଥିବାବେଳେ ଖାନତଲାସ କରିଥିଲେ । କିନ୍ତୁ ଶେଷରେ କିଛି ନ ପାଇ ହତାଶ ହୋଇ ଫେରିଯାଇଥିଲେ । ତିଳକ ମହାରାଜ ମାଣ୍ଡାଲେ-ଜେଲରେ ହାଜତ ଭୋଗ କରିବାକୁ ଲାଗିଲେ । ତାଙ୍କୁ ଜାମିନରେ ଖଲାସ ଦେବାପାଇଁ ଦୁଇ ଥର ଦରଖାସ୍ତ କରାଯାଇଥିଲେ-ହେଁ ଶେଷରେ ତାହା ନାମଞ୍ଜୁର ହୋଇଥିଲା । ଜୁଲାଇ ମାସ ୧୩ ତାରିଖରେ ବୋମ୍ବେ ହାଇକୋର୍ଟରେ ମୋକଦ୍ଦମାର ବିଚାର ଆରମ୍ଭ ହେଲା । ବିଶେଷ

ନ୍ୟାୟଚଠନ ନିମନ୍ତେ ସାତଜଣ ଇଉରୋପିୟାନ ଓ ଦୁଇଜଣ ଭାରତୀୟ ମନୋନୀତ ହେଲେ । କେଶରୀରେ ପ୍ରକାଶିତ ହୋଇଥିବା ଯେଉଁସବୁ ପ୍ରବନ୍ଧ ନିମିତ୍ତ ତିଳକ ମହାରାଜ ରାଜବିଦ୍ରୋହ ଅଭିଯୋଗରେ ଅଭିଯୁକ୍ତ ହୋଇଥିଲେ, ସେ ଗୁଡ଼ିକ ମରହଟ୍ଟୀ ଭାଷାରେ ଲେଖା ।

ବିଚାରପତି ଓ ନ୍ୟାୟଙ୍କ ମଧ୍ୟରୁ କେହି ହିନ୍ଦୁ ଭାଷା ସହିତ ପରିଚିତ ନଥିଲେ । ତେଣୁ ଦୋଭାଷୀ ସାହାଯ୍ୟରେ ତାହାଙ୍କୁ ନିଜ ପକ୍ଷ ନିକେ ସମର୍ଥନ କରିବାକୁ ପଡ଼ିଥିଲା । ମୋକଦ୍ଦମାରେ ତୃତୀୟ ଦିନ ଅପରବେଳା ୪ଟା ବେଳେ ତିଳକ ମହାରାଜ ତାଙ୍କର ବକ୍ତୃତା ଆରମ୍ଭ କରିଥିଲେ ଓ ଅଷ୍ଟମ ଦିନ ଦ୍ୱିପ୍ରହର ବେଳେ ତାହା ଶେଷ ହୋଇଥିଲା । ତିଳକ ଏଥିପାଇଁ ସମ୍ପୂର୍ଣ୍ଣ ରୂପେ ପ୍ରସ୍ତୁତ ହେବାର ସୁବିଧା ପାଇ ନ ଥିଲେହେଁ ତାଙ୍କର ଅସାଧାରଣ ସ୍ମୃତିଶକ୍ତି ଓ ପାଣ୍ଡିତ୍ୟ ବଳରେ ସେ ଅତି ସୁନ୍ଦର ଭାବରେ ବକ୍ତୃତା ଦେଇ ଆତ୍ମପକ୍ଷ ସମର୍ଥନ କରିବାକୁ ସକ୍ଷମ ହୋଇଥିଲେ । ତିଳକ ମହାରାଜ, ଅକାଟ୍ୟ ଯୁକ୍ତି ଓ ପ୍ରମାଣ ଦ୍ୱାରା ପରିଷ୍କାରଭାବେ ଦେଖାଇଥିଲେ ଯେ ତାଙ୍କର ମୂଳ ପ୍ରବନ୍ଧ ନିମିତ୍ତ ସେ ଆଇନତଃ ଅଭିଯୁକ୍ତ ହୋଇପାରିବେ ନାହିଁ । ତାଙ୍କ ଲେଖାର ବିକୃତ ଇଂରାଜୀ ଅନୁବାଦ ପାଇଁ ତାହାଙ୍କୁ ଅଭିଯୁକ୍ତ କରାଯାଇଅଛି ।

ବିଚାରପତି ମିঃ ଡାଭର ନ୍ୟାୟମାନଙ୍କୁ ମୋକଦ୍ଦମାର ସମସ୍ତ ହାଲ ବୁଝାଇଦେବା ସମୟରେ ସେମାନଙ୍କ ନିକଟରେ ତିଳକଙ୍କ ସମ୍ବନ୍ଧରେ ପ୍ରତିକୂଳ ମତବ୍ୟକ୍ତ କରିଥିଲେ । ମୋକଦ୍ଦମାର ଶେଷ ଦିନ ରାତି ୮ଟା ବେଳେ ନ୍ୟାୟମାନେ ନିଜ ନିଜ ମଧ୍ୟରେ ପରାମର୍ଶ କରିବା ନିମିତ୍ତ ମିଶିଲାରୁ ଉଠିଯାଇ ପ୍ରାୟ ଦେଢ଼ଘଣ୍ଟା ପରେ ଫେରିଲେ ଏବଂ ସାତଜଣ ତିଳକଙ୍କୁ ଦୋଷୀ ଓ ଦୁଇଜଣ ନିର୍ଦ୍ଦୋଷ ସାବ୍ୟସ୍ତ କଲେ । ଶେଷରେ ବିଚାରପତି ଅଧିକାଂଶ ନ୍ୟାୟଙ୍କ ମତାନୁଯାୟୀ ତିଳକଙ୍କୁ ଅପରାଧୀ ସାବ୍ୟସ୍ତ କରି ତାହାଙ୍କୁ ଛଅବର୍ଷ ଦ୍ୱୀପାନ୍ତର ଓ ୧୦୦୦ ଟଙ୍କା ଅର୍ଥଦଣ୍ଡରେ ଦଣ୍ଡିତ କଲେ । ଦଣ୍ଡାଜ୍ଞା

ସମୟରେ ବିଚାରପତି ତିଲକଙ୍କ ପ୍ରତି ଲକ୍ଷ୍ୟ କରି କହିଥିଲେ—"ଆପଣଙ୍କର ଅସାମାନ୍ୟ ପ୍ରତିଭା, ଅଦମ୍ୟ ଶକ୍ତି ଓ ଲୋକସାଧାରଣଙ୍କ ଉପରେ ଅଗାଧ ପ୍ରଭାବ ଅଛି । ଏହି ପ୍ରତିଭା ଓ ପ୍ରଭାବ ଯଦି ଆପଣ, ଆପଣଙ୍କ ଦେଶର ମଙ୍ଗଳ ସକାଶେ ଲଗାଇଥାନ୍ତେ, ତେବେ ଆପଣ ଯେଉଁ ଜନସାଧାରଣଙ୍କ ମଙ୍ଗଳ ପାଇଁ ଏତେଦୂର ଚିନ୍ତିତ, ସେହିମାନଙ୍କ ସୁଖ ସନ୍ତୋଷ ଅନେକ ପରିମାଣରେ ବର୍ଦ୍ଧନ କରି ପାରିଥାନ୍ତେ । ରାଜନୈତିକ ଆନ୍ଦୋଳନରେ ବୋମା ବ୍ୟବହାର ଯେ ବିଧିସଙ୍ଗତ ଉପାୟ ଏହା ମସ୍ତିଷ୍କହୀନ ବ୍ୟକ୍ତି ବ୍ୟତୀତ ବୋଧହୁଏ ଅନ୍ୟ କେହି ଚିନ୍ତା କରି ନ ପାରେ । ଆଉ ଆପଣ ଯେଉଁ ପ୍ରବନ୍ଧଗୁଡ଼ିକ ଲେଖିଛନ୍ତି, ସେ ଗୁଡ଼ିକ ଯେ ଯୁକ୍ତି ସଙ୍ଗତ ଭାବରେ ଲେଖା ଯାଇଅଛି, ଏହା ମଧ୍ୟ ବିକୃତ ମସ୍ତିଷ୍କ ଲୋକ ବ୍ୟତୀତ ଆଉ କେହି କହି ପାରିବେ ନାହିଁ । ଆପଣଙ୍କ ପରି ଅବସ୍ଥାପନ୍ନ ଓ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କ ଉପରି ଦଣ୍ଡ ଦେଲେ ଯେ ଆଇନ ଓ ବିଚାରର ଉଦ୍ଦେଶ୍ୟ ସିଦ୍ଧ ହେବ, ତାହା ମୁଁ ବର୍ତ୍ତମାନ ଭାବୁଛି । ଆପଣଙ୍କର ଅନ୍ୟାନ୍ୟ ପାରିପାର୍ଶ୍ୱିକ ଅବସ୍ଥା ବିଷୟ ବିଚାର କରି ମୁଁ ବିବେଚନା କରୁଛି ଯେ ଦେଶରେ ଶାନ୍ତି ଓ ଶୃଙ୍ଖଳା ରକ୍ଷା ନିମିତ୍ତ ଏବଂ ଯେଉଁ ଦେଶ ସେବାରେ ଆପଣ ଏତେ ଦୂର ଲାଗି ପଡ଼ିଛନ୍ତି, ସେହି ଦେଶର ମଙ୍ଗଳ ନିମିତ୍ତ ଆପଣଙ୍କୁ ଅନ୍ତତଃ କେତେକ ଦିନ ପାଇଁ ସେହି ଦେଶରୁ ଦୂରରେ ରଖିବାହିଁ ବିଶେଷ ବାଞ୍ଛନୀୟ" । ତିଲକ ମହାରାଜ ବିଚାରପତିଙ୍କର ଏଭଳି ମନ୍ତବ୍ୟରେ ନିଜକୁ ଅପମାନିତ ମନେ କରିଥିଲେ । ମିଃ ଡାଭର ତିଲକଙ୍କୁ ତାଙ୍କର ଶେଷମତ ବ୍ୟକ୍ତ କରିବାକୁ କହିବାରୁ ସେ ସାକ୍ଷ୍ୟ ମଞ୍ଚ ଭିତରେ ମର୍ମ୍ମସ୍ପର୍ଶୀ ଭାଷାରେ କହିବାକୁ ଲାଗିଲେ—"ମୁଁ କେବଳ ଏତିକିମାତ୍ର କହିବାକୁ ଚାହେଁ ଯେ ଜୁରୀମାନେ ମୋତେ ଅପରାଧୀ ସାବ୍ୟସ୍ତ କଲେ ମଧ୍ୟ ମୁଁ କହୁଛି ଯେ ମୁଁ ନିରପରାଧ । ଏକ ମହାଶକ୍ତି ଦ୍ୱାରା ସମଗ୍ର ଜଗତ ଚାଳିତ ହେଉଅଛି । ଭଗବାନଙ୍କର ବୋଧହୁଏ ଏହି ଇଚ୍ଛା ଯେ, ମୁଁ ଯେଉଁ ଉଦ୍ଦେଶ୍ୟ ସିଦ୍ଧି ନିମିତ୍ତ ଆତ୍ମୋତ୍ସର୍ଗ କରିଥିଲି, ମୁଁ ସ୍ୱାଧୀନ ରହିବା ଅପେକ୍ଷା ଅଧିକ ଦୁଃଖ କଷ୍ଟରେ ପଡ଼ିଲେ ସେହି ଉଦ୍ଦେଶ୍ୟ ଅଧିକତର ସଫଳତା ଲାଭ କରିବ" ।

ତିଳକ ମହାରାଜଙ୍କର ଦଣ୍ଡାଜ୍ଞା ଜନିତ ଏହି ଦୁଃସମ୍ବାଦ ସେହି ଦିନ ସହରରେ ସର୍ବତ୍ର ପ୍ରଚାରିତ ହେଲା । ସହରବାସୀ ବଡ଼ ଉତ୍ତେଜିତ ହୋଇ ଉଠିଲେ । ହାଟ, ବଜାର ସବୁ ବନ୍ଦ ହେଲା । କଳ କାରଖାନାର ଲୋକେ ଛଅଦିନ କେହି କିଛି କାମ କଲେ ନାହିଁ । ପ୍ରତ୍ୟେକେ ନିଜ ଇଚ୍ଛାରେ ତିଳକ ମହାରାଜଙ୍କ ନିମିତ୍ତ ଦୁଃଖପ୍ରକାଶ କରିବାକୁ ଲାଗିଲେ । କ୍ରମାଗତ ସପ୍ତାହକ ପର୍ଯ୍ୟନ୍ତ ତିଳକଙ୍କ ମୋକଦ୍ଦମାର ବିବରଣୀ ଓ ପ୍ରତିକୃତି ବିକ୍ରୀ ହେବାକୁ ଲାଗିଲା । ବୋମ୍ବେର ଜନସାଧାରଣ ତିଳକଙ୍କ କାରାଦଣ୍ଡରେ ଏପରି ଉତ୍ତେଜିତ ହୋଇ ଉଠିଲେ ଯେ ସହରର ନାନା ସ୍ଥାନରେ ଗଣ୍ଡଗୋଳ ଆରମ୍ଭ ହେଲା । ଏହା ନିବାରଣ କରିବା ପାଇଁ ପୋଲିସ ଗୁଳିର ଆଶ୍ରୟ ନେଇଥିଲେ । ଏଥିରେ ୧୫ ଜଣ ଆହତ ଓ ୩୮ ଜଣ ନିହତ ହେଲେ । ମଧ୍ୟବିତ୍ତ ଶିକ୍ଷିତ ଶ୍ରେଣୀର ଲୋକେ ମଧ୍ୟ ଏକ ସପ୍ତାହ ପର୍ଯ୍ୟନ୍ତ ସେମାନଙ୍କର ନିଜ ନିଜ କାମ ବନ୍ଦ ରଖିଥିଲେ ।

ତିଳକ ମହାରାଜ ଶୀଘ୍ର ବୋମ୍ବେ ସହରରୁ ଅହମଦାବାଦକୁ ସ୍ଥାନାନ୍ତରିତ ହେଲେ । କିନ୍ତୁ ସରକାର ତାଙ୍କୁ ଆଣ୍ଡାମାନ ନ ପଠାଇ ମାଣ୍ଡାଲେ ଜେଲରେ ଛଅବର୍ଷ କାଳ ନିର୍ବାସିତ ଅବସ୍ଥାରେ ରଖିଲେ । ଅହମଦାବାଦ ଅବସ୍ଥାନ ସମୟରେ ସରକାର ତିଳକଙ୍କର ହଜାରଟଙ୍କା ଜୋରିମାନା ମାଫ୍ କରି ଦେଇଥିଲେ ।

ତିଳକ ମହାରାଜଙ୍କୁ ଖଲାସ କରିଦେବା ପାଇଁ ତାଙ୍କର ଆତ୍ମୀୟ ବନ୍ଧୁମାନେ ବୋମ୍ବେ ହାଇକୋର୍ଟରେ ବାରମ୍ବାର ଆବେଦନ କରି ବିଫଳ ମନୋରଥ ହେବା ପରେ ପ୍ରିଭି କାଉନ୍‌ସିଲ୍‌ରେ ଅପିଲ ଦାୟର କରିବା ନିମିତ୍ତ ତିଳକଙ୍କର ବିଶ୍ୱସ୍ତ ବନ୍ଧୁ ଓ ସହଯୋଗୀ ସମ୍ପାଦକ ଖାପର୍ଦେ ମହାଶୟଙ୍କୁ ବିଲାତ ପଠାଇଥିଲେ । ସେଠା ବିଷୟରେ ମଧ୍ୟ ଭାରତ ସରକାରର ପରାମର୍ଶ ଗ୍ରହଣ କରାଯାଏ । କାର୍ଯ୍ୟତଃ ସେ ଚେଷ୍ଟାରେ ମଧ୍ୟ କିଛି ଫଳ ହେଲା ନାହିଁ ।

---

## ଗୀତା ରହସ୍ୟ

ମାଣ୍ଡାଲେ ଜେଲରେ ଥିଲାବେଳେ ତିଲକ ମହାରାଜ ତାଙ୍କର ବିଖ୍ୟାତ ଗ୍ରନ୍ଥ 'ଗୀତ ରହସ୍ୟ' ପ୍ରଣୟନ କରିଥିଲେ । ଗୀତା ରହସ୍ୟ, ଶ୍ରୀମଦ୍ଭଗବଦ୍-ଗୀତାର କର୍ମଯୋଗ ବିଶିଷ୍ଟାତ୍ମକ ଭାଷ୍ୟ । ଏହି ଗ୍ରନ୍ଥରେ ତିଲକ ଗୀତାର କର୍ମଯୋଗର ପ୍ରାଧାନ୍ୟ ପ୍ରମାଣ କରିଛନ୍ତି । କର୍ମମୟ ଜୀବନ ସମ୍ବନ୍ଧରେ ହିନ୍ଦୁ ଦର୍ଶନ ଶାସ୍ତ୍ରର ଉପଦେଶ ମଧ୍ୟ ବିଶଦ୍ଭାବରେ ଆଲୋଚନା କରିଛନ୍ତି । ତିଲକ ମହାରାଜ ଶ୍ରୀମଦ୍ଭଗବଦ୍ଗୀତା ଉପରେ ଯେଉଁ ଚମତ୍କାର ଗବେଷଣା କରିଅଛନ୍ତି, ତାହା ଏକ ଅମୂଲ୍ୟ ବସ୍ତୁ, ସାହିତ୍ୟ ଭଣ୍ଡାରରେ ଏହା ଏକ ଅମୂଲ୍ୟ ରତ୍ନ । ଏହିଗୀତା ରହସ୍ୟ ପାଠ କଲେ ଗୀତାରେ କି ଅମୂଲ୍ୟ ତଥ୍ୟମାନ ନିହିତ ଅଛି, ତାହା ବିଶଦଭାବେ ଜଣାଯାଇପାରିବ ।

ଗୀତାରହସ୍ୟ ବିଂଶଶତାବ୍ଦୀର ଗୋଟିଏ ସର୍ବୋତ୍କୃଷ୍ଟ ଗ୍ରନ୍ଥ । ତିଲକ ମହାରାଜ ଯଦି ଆଉ କିଛି କରି ନଥାନ୍ତେ, ତେବେ ଏହି ଗ୍ରନ୍ଥ ଖଣ୍ଡିକ ତାଙ୍କୁ ଭାରତ ଇତିହାସରେ ଅମର କରିଥାନ୍ତା ।

ଗୀତା ରହସ୍ୟ ବୋମ୍ବାଇ ପ୍ରଦେଶରେ ଯଥେଷ୍ଟ ପ୍ରଚାର ଲାଭ କରିଅଛି । ହିନ୍ଦି, ଇଂରେଜୀ, ବଙ୍ଗଳା, ଓଡ଼ିଆ ଆଦି ନାନାଭାଷାରେ ଏହା ଅନୁବାଦିତ ହୋଇ ପ୍ରକାଶିତ ହୋଇଅଛି । ଯେଉଁମାନେ ଏହାର ଆଲୋଚନାରେ ପ୍ରବୃତ୍ତ ହୋଇଛନ୍ତି, କେବଳ ସେହିମାନେହିଁ ଏହାର ଉପାଦେୟତା ହୃଦୟଙ୍ଗମ କରିପାରିଛନ୍ତି ।

ମାଣ୍ଡାଲେ ଜେଲରେ ଥିଲାବେଳେ ତିଲକ ମହାରାଜାଙ୍କର ପତ୍ନୀ ବିୟୋଗ ଘଟିଥିଲା । ଶୁଣାଯାଏ ତିଲକ ମହାରାଜ ତାଙ୍କ ସହିତ ପରାମର୍ଶ ନ କରି କୌଣସି ଗୁରୁତର କାର୍ଯ୍ୟରେ ହସ୍ତକ୍ଷେପ କରୁ ନ ଥିଲେ । ଏଣୁ ତାଙ୍କ ମୃତ୍ୟୁରେ ତିଲକ ମହାରାଜ ବଡ଼ ବ୍ୟଥିତ ହୋଇ ପଡ଼ିଥିଲେ ।

ତିଲକଙ୍କର ଅସାଧାରଣ ଚରିତ୍ରସମର କ୍ଷମତା ଥିଲା । ରାଜନୀତି କ୍ଷେତ୍ରରେ ଘୋର ଲାଞ୍ଛନା ଓ ଅପମାନ ଭୋଗକରି ସେ ଯେପରି ସବୁ ଭୁଲି ପାରୁଥିଲେ, ଏହି ସୁଖ, ଦୁଃଖର ସଙ୍ଗୀମାନଙ୍କୁ ହରାଇ ମଧ୍ୟ ସେ ସେହିପରି ତାଙ୍କ କଥା ବିସ୍ମୃତ ହେବାକୁ ସମର୍ଥ ହୋଇଥିଲେ ।

---

# ମୁକ୍ତିପରେ

ପୂର୍ଣ୍ଣ ଛଅବର୍ଷ କାଳ କାରାଦଣ୍ଡ ଭୋଗକରି ତିଲକ ମହାରାଜ ୧୯୧୪ ମସିହା ଜୁଲାଇ ମାସରେ ଜେଲରୁ ଖଲାସ ହୋଇ ସ୍ୱଦେଶକୁ ଫେରିଲେ । ତିଲକ ମହାରାଜାଙ୍କ ଜେଲ ମୁକ୍ତିରେ ସାରା ଭାରତରେ ଆନନ୍ଦର ଢେଉ ଖେଳି ଯାଇଥିଲା । ଦେଶବାସୀ ତାହାଙ୍କର ବିପୁଳ ସମ୍ବର୍ଦ୍ଧନା କରିଥିଲେ । ସେହି ସମୟରେ ଇଉରୋପୀୟ ମହାଯୁଦ୍ଧ ଆରମ୍ଭ ହେଲା । ଲର୍ଡ଼ ହାର୍ଡ଼ିଞ୍ଜ ସେତେବେଳେ ଭାରତର ବଡ଼ଲାଟ । ମର୍ଲେ-ମିଣ୍ଟୋ ଶାସନ ସଂସ୍କାର ଭାରତରେ ପ୍ରବର୍ତ୍ତିତ ହୋଇଥିଲା । ଇତିମଧ୍ୟରେ ଭାରତରେ ଅନେକ ପରିବର୍ତ୍ତନ ଘଟିଥିଲା । ଭାରତର ରାଜନୀତି କ୍ଷେତ୍ରରେ ଭୟଙ୍କର ଗୋଳମାଳ ଉପସ୍ଥିତ ହୋଇଥିଲା । ତିଲକ ମହାରାଜ ତାହାଙ୍କର ନିର୍ବାସନ ଦଣ୍ଡରେ ଅଣୁମାତ୍ର କ୍ଷୁବ୍ଧ ନ ହୋଇ ପୁନର୍ବାର ଦ୍ୱିଗୁଣ ଉତ୍ସାହରେ ସକ୍ରିୟ ରାଜନୈତିକ କ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ଦେଶ ସେବାରେ ଅଧିକତର ପରିମାଣରେ ଆତ୍ମନିୟୋଗ କରିବାକୁ ଲାଗିଲେ ।

---

## କଂଗ୍ରେସରେ ମିଳାମିଶା ଉଦ୍ୟମ

ସୁରଟ କଂଗ୍ରେସରେ ଚରମ ପନ୍ଥୀ ଓ ନରମ ପନ୍ଥୀଙ୍କ ମଧ୍ୟରେ ଯେ ଘୋର ମତାନ୍ତର ଓ ମନାନ୍ତର ଘଟିଥିଲା, ତହିଁର ମୀମାଂସା ନିମିତ୍ତ ଦେଶବାସୀ ଆଗ୍ରହାନ୍ୱିତ ହେଲେ । ୧୯୧୦ ମସିହାରେ ସାର୍ ଉଇଲିୟମ ଓ୍ୱେଡ଼ାରବର୍ଣ୍ଣ ଏ ବିଷୟରେ ଅନେକ ଚେଷ୍ଟା କରିଥିଲେ । କିନ୍ତୁ ୧୯୧୪ ମସିହା ପୂର୍ବରୁ ମିଳାମିଶାର କୌଣସି ସମ୍ଭାବନା କେହି ଦେଖି ପାରିଲେ ନାହିଁ । ପୃଥିବୀର ଜାତିସଙ୍ଘରେ ଭାରତ ତାହାର ଯଥା-ଯୋଗ୍ୟ ଆସନ ପାଇବା ପାଇଁ ଦାବୀ କରିବାର ଯେ ଆଶା କରୁଥିଲା, ସେଥିପାଇଁ ସବୁ ସମ୍ପ୍ରଦାୟର ସମ୍ମିଳିତ ଚେଷ୍ଟା ଯେ ପ୍ରୟୋଜନ, ଏହା ସମସ୍ତେ ଅନୁଭବ କରି ପାରିଥିଲେ । ତେଣୁ ଏହି ଉଭୟ ଦଳ ମଧ୍ୟରେ କିପରି ପୁନର୍ମିଳନ ଘଟିବ, ଏଥିପାଇଁ ସମସ୍ତେ ଆକାଂକ୍ଷିତ ହେଲେ ।

୧୯୧୪ ମସିହାରେ ମାନ୍ଦ୍ରାଜ କଂଗ୍ରେସ ବସିବା ପୂର୍ବରୁ ଶ୍ରୀମତୀ ଆନିବେସାନ୍ତ ଚରମ ପନ୍ଥୀ ଓ ନରମ ପନ୍ଥୀଙ୍କ ମଧ୍ୟରେ ମିଳାମିଶା ପାଇଁ ଚେଷ୍ଟା କରୁଥିଲେ । ଉଭୟ ଦଳକୁ ମିଳିମିଶି କାର୍ଯ୍ୟ କରିବା ପାଇଁ ସେ ନାନା ସ୍ଥାନରେ ପରାମର୍ଶ ଦେଉଥିଲେ । ପରବର୍ଷ ବୋମ୍ବେ କଂଗ୍ରେସରେ ଉଭୟ ଦଳ ମିଳିମିଶି କାର୍ଯ୍ୟ କରିବା ପାଇଁ ତିଳକ ମହାରାଜ ମଧ୍ୟ ଖୁବ୍ ଚେଷ୍ଟା କରିଥିଲେ । ସେ ଉଭୟ ଦଳର ନେତାମାନଙ୍କ ସହିତ ଦେଖା ସାକ୍ଷାତ କରି ସେମାନଙ୍କ ମତାମତ ଗ୍ରହଣ କରିଥିଲେ ଏବଂ ଏ ସମ୍ପର୍କରେ ତାଙ୍କର ମରହଟ୍ଟା ପତ୍ରିକାରେ ଯେଉଁଭଳି ମନ୍ତବ୍ୟ ପ୍ରକାଶ କରିଥିଲେ, ତଦ୍ଦ୍ୱାରା ମିଳନର ଆଶା ଅନେକ ପରିମାଣରେ ସମ୍ଭବପର ହୋଇଥିଲା ।

୧୯୧୪ ମସିହା ଡ଼ିସେମ୍ବର ତା ୯ ରିଖରେ ଭାରତସେବକ ସମିତି ନରମପନ୍ଥୀଙ୍କ ପକ୍ଷରୁ ଯେଉଁ ନିବେଦନ ପତ୍ର ପ୍ରସ୍ତୁତ କରିଥିଲେ, ତଦ୍ଦ୍ୱାରା

ମିଳନର ପଥ ଆହୁରି ସରଳ ହୋଇ ଆସିଲା; କିନ୍ତୁ ସେତେବେଳେ ନରମ ପନ୍ଥୀମାନେ ଭାବିବାକୁ ଲାଗିଲେ ଯେ ଚରମ ପନ୍ଥୀମାନେ କୌଶଳର ସହିତ କାର୍ଯ୍ୟୋଦ୍ଧାର ପାଇଁ ଚେଷ୍ଟା କରୁଛନ୍ତି । ତେଣୁ ସେମାନେ ମହାମତି ଗୋଖେଲଙ୍କ ନେତୃତ୍ୱରେ ସେମାନଙ୍କ ଦଳକୁ ଆହୁରି ସୁଦୃଢ଼ କରିବାକୁ ଚେଷ୍ଟା କରିଥିଲେ । ଗୋଖେଲ ଏହାର କାରଣ ଭଲରୂପେ ବୁଝି ନପାରି ଅନ୍ୟାନ୍ୟ ନରମପନ୍ଥୀଙ୍କ ପରାମର୍ଶରେ ତିଳକଙ୍କ ବିରୁଦ୍ଧରେ ଏକ ଘୋଷଣା ପତ୍ର ପ୍ରକାଶ କଲେ । କିନ୍ତୁ ଦେଶର ଦୁର୍ଭାଗ୍ୟ, ତିଳକ ମହାରାଜ ଏହି ଘୋଷଣା ପତ୍ରର ଉତ୍ତର ଦେବାର କିଛି ଆଠଦିନ ପରେ ମହାମତି ଗୋଖେଲଙ୍କର ମୃତ୍ୟୁ ଘଟିଥିଲା । ୧୯୧୫ ମସିହା ବୋମ୍ବେ କଂଗ୍ରେସରେ ତିଳକ ମହାରାଜଙ୍କ ପ୍ରଗାଢ଼ ଉଦ୍ୟମରେ ଉଭୟ ସମ୍ପ୍ରଦାୟର ପୁନର୍ମିଳନ ହେଲା ।

---

## ପୁଣି କାର୍ଯ୍ୟାରମ୍ଭ

କଂଗ୍ରେସର ସମସ୍ତ ଗୋଳମାଳ ମେଣ୍ଟିଯିବା ପରେ ତିଳକ ମହାରାଜ ହୋମରୁଲ ବା ସ୍ୱରାଜ ଆନ୍ଦୋଳନ ଆରମ୍ଭ କରିଥିଲେ । ଏ ସମ୍ପର୍କରେ ସେ ଭାରତର ନାନା ସ୍ଥାନରେ ବକ୍ତୃତା ଦେଇ ଦେଶବାସୀଙ୍କ ହୃଦୟରେ ସ୍ୱରାଜଲାଭର ପ୍ରବଳ ସ୍ପୃହା ଜନ୍ମାଇ ଥିଲେ । ତିଳକ ମହାରାଜ ସାଧାରଣତଃ ଦେଶୀୟ ଭାଷାରେ ବକ୍ତୃତା ଦେଉଥିଲେ । ସେ ଯେଉଁଠାରେ ବକ୍ତୃତା ଦେଉଥିଲେ, ସେଠାରେ ଅସଂଖ୍ୟ ଲୋକ ଜମା ହେଉଥିଲେ । ତିଳକ ମହାରାଜାଙ୍କର ବକ୍ତୃତା ଦେବାର ଅସାଧାରଣ କ୍ଷମତା ଥିଲା ।

ତାହାଙ୍କର ସହଜ, ସରଳ ଯୁକ୍ତିପୂର୍ଣ୍ଣ ବକ୍ତୃତା ଶ୍ରୋତାମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ବିସ୍ତାର କରି ପାରୁଥିଲା ।

---

## ଜାମିନ ଦାବୀ

ତିଳକ ମହାରାଜଙ୍କର ନୂତନ କାର୍ଯ୍ୟ ତତ୍ପରତା ଦେଖି ସରକାର ପ୍ରମାଦ ଗଣିଲେ । ୧୯୧୮ ମସୀହା ଜୁଲାଇ ମାସ ତା ୨୩ ରିଖ ତିଳକ ମହାରାଜାଙ୍କର ଏକ ଷଷ୍ଠିତମ ଜନ୍ମଦିନୋତ୍ସବ । ମରହଟ୍ଟା ସମ୍ପ୍ରଦାୟ ପୂର୍ବ ପ୍ରଥାନୁଯାୟୀ ଏ ଦିନ ତାଙ୍କର ଜନ୍ମଦିନୋତ୍ସବ ମହା ସମାରୋହର ସହିତ ସମ୍ପନ୍ନ କରି ତିଳକ ମହାରାଜାଙ୍କୁ ଏକଲକ୍ଷ ଟଙ୍କା ଉପହାର ସ୍ୱରୂପ ପ୍ରଦାନ କରିଥିଲେ । ଠିକ୍ ସେହିଦିନ ବୋମ୍ବେ ସରକାର ତିଳକଙ୍କ ଉପରେ ନୋଟିସ ଜାରି କଲେ :—"ଯେହେତୁ ବେଲଗାଁ ଓ ଅହମଦ-ନଗରରେ ହୋମରୁଲ୍ ସମ୍ବନ୍ଧରେ ଆପଣଙ୍କର ତିନୋଟି ବକ୍ତୃତା ବିଶେଷ ଆପତ୍ତିଜନକ ହୋଇଅଛି, ସେହିହେତୁ ଆପଣଙ୍କୁ ଆଦେଶ ଦିଆଯାଉଅଛି କି ଆପଣ ଏକ ବର୍ଷ ପର୍ଯ୍ୟନ୍ତ ସଦ୍‌ଭାବରେ ରହିବା ନିମିତ୍ତ ୪୦,୦୦୦ ହଜାର ଟଙ୍କା ଜାମିନ ମୁଚ୍ଛଲିକାରେ କାହିଁକି ଆବଦ୍ଧ ନ ରହିବେ, ତାହାର ଉପଯୁକ୍ତ କାରଣ ଦର୍ଶାନ୍ତୁ" । ଏଭଳି ନୋଟିସ ପାଇ ତିଳକ ମହାରାଜ ତିଳେମାତ୍ର ବିଚଳିତ ହୋଇ ନ ଥିଲେ । ଯଥାସମୟରେ ସେ ଅଭିନନ୍ଦନ ସଭାରେ ଉପସ୍ଥିତ ହୋଇ ଦେଶବାସୀଙ୍କର କର୍ତ୍ତବ୍ୟ ବିଷୟରେ ଏକ ଓଜସ୍ୱିନୀ ବକ୍ତୃତା ଦେଇ କହିଥିଲେ :—"ଆମ୍ଭମାନଙ୍କ ସମ୍ମୁଖରେ ଯେଉଁ ବିଶାଳ ଜାତୀୟ କର୍ମକ୍ଷେତ୍ର ପଡ଼ିରହିଛି, ସେଥିରେ ସମସ୍ତଙ୍କୁ ଏକ-ଯୋଗରେ କାର୍ଯ୍ୟ କରିବାକୁ ହେବ । ଜାତୀୟ କର୍ତ୍ତବ୍ୟ ଉପକ୍ଷେଣୀୟ

ନୁହେଁ । ଭାରତମାତା ଆମ୍ଭମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କୁ କର୍ମରେ ନିଯୁକ୍ତ ହେବାକୁ ଗୁହାରି କରିଛନ୍ତି । ମାତାର ସନ୍ତାନମାନେ ଯେ ମା'ର ଆହ୍ୱାନ ନ ଶୁଣିବେ, ଏଥିରେ ମୋର ତିଳେମାତ୍ର ସନ୍ଦେହ ନାହିଁ । ସମସ୍ତେ ଆଦର୍ଶ କର୍ମବୀର ହେବାକୁ ଚେଷ୍ଟା କରନ୍ତୁ । ଯଦି ଆମ୍ଭେମାନେ ଆମ୍ଭ-ମାନଙ୍କ କର୍ମର ସୁଫଳ ନ ପାଉ, ଆମ୍ଭମାନଙ୍କ ପରବର୍ତ୍ତୀ ବଂଶଧରମାନେ ଏହାର ଫଳ ନିଶ୍ଚୟ ପାଇବେ ।" "ମୁଁ ଏହି ଯେ ଲକ୍ଷେ ଟଙ୍କା ଉପହାର ପାଇଲି, ସେଥିରୁ ଏକ କପର୍ଦ୍ଦକ ମାତ୍ର ନିଜ ପାଇଁ ଖର୍ଚ୍ଚ କରିବି ନାହିଁ । ସମସ୍ତ ଟଙ୍କା ସ୍ୱରାଜ୍ୟ ଆନ୍ଦୋଳନ ପାଇଁ ବ୍ୟୟ କରିବି ।"

ତିଲକ ମହାରାଜ ପୁନାର ଜିଲ୍ଲା ମାଜିଷ୍ଟ୍ରେଟଙ୍କର ଜାମିନ ଆଦେଶ ବିରୁଦ୍ଧରେ ହାଇକୋର୍ଟରେ ଅପିଲ ଦାୟର କରିଥିଲେ । ହାଇକୋର୍ଟ ବିଚାରରେ ତିଲକଙ୍କର ଜୟ ହେଲା ଏବଂ ତାଙ୍କର ଚାଳିଶ ହଜାର ଟଙ୍କା ତାଙ୍କୁ ଫେରାଇ ଦିଆଗଲା ।

---

## ହୋମରୁଲ ଓ କଂଗ୍ରେସର କାର୍ଯ୍ୟ

୧୯୧୬ ମସୀହା ସେପ୍‌ଟେମ୍ବର ମାସରେ ତିଲକଙ୍କ ଉଦ୍ୟମରେ ପୁନାରେ "ହୋମରୁଲ ଲିଗ୍" ( ସ୍ୱାୟତ୍ତ ଶାସନ ସଂଘ ) ପ୍ରତିଷ୍ଠିତ ହେଲା । ବକ୍ତୃତା ଓ ପୁସ୍ତିକା ପ୍ରଚାର ଦ୍ୱାରା ଲୋକମାନଙ୍କୁ ଶିକ୍ଷା ଦେଇ ସେମାନଙ୍କ ମଧ୍ୟରେ ଜାତୀୟତାବୋଧ ଉଦ୍ଦୀପନା କରିବା ଏହି ଅନୁଷ୍ଠାନର ଉଦ୍ଦେଶ୍ୟ । ସେହି ବର୍ଷ ଡିସେମ୍ବର ମାସରେ ତିଲକ ମହାରାଜ ଲକ୍ଷ୍ନୌ ଜାତୀୟ ମହା-ସଭାରେ ଯୋଗଦେଇ ସେଠାରେ ଯଥୋଚିତ ଅଭ୍ୟର୍ଥିତ ଓ ସମ୍ମାନିତ

ହୋଇଥିଲେ । ସେଠାରେ ସେ ନିମ୍ନଲିଖିତ ମର୍ମରେ ବକ୍ତୃତା ଦେଇ 'ସ୍ୱାୟତ୍ତଶାସନ' ବିଷୟକ ପ୍ରସ୍ତାବ ସମର୍ଥନ କରି କହିଥିଲେ :—

"ଦଶବର୍ଷ ପୂର୍ବରୁ ମାନନୀୟ ଦାଦା ଭାଇ ନୌରଜୀ ଘୋଷଣା କରିଛନ୍ତି ଯେ, 'ସ୍ୱରାଜ' ଆମ୍ଭମାନଙ୍କର ଲକ୍ଷ୍ୟ । ସେତେବେଳେ 'ସ୍ୱାୟତ୍ତ ଶାସନ' ଶବ୍ଦଟି କେବଳ ସ୍ୱରାଜ ଅର୍ଥରେ ବ୍ୟବହୃତ ହେଉଥିଲା । ପରେ ଏହାକୁ ନିୟନ୍ତ୍ରିତ ସ୍ୱାୟତ୍ତଶାସନ ଆଖ୍ୟା ଦିଆଗଲା ଏବଂ ବର୍ତ୍ତମାନ ଆମ୍ଭେମାନେ ଏହାକୁ 'ହୋମରୁଲ' ନାମରେ ଅଭିହିତ କରୁଅଛୁଁ । ଗୋଟିଏ ଶବ୍ଦ ତିନୋଟି ସ୍ୱତନ୍ତ୍ର ନାମରେ ଅଭିହିତ ହେଲେହେଁ ଏହାର ଅର୍ଥ ଏକ । କେହି କେହି କହନ୍ତି ଯେ ଏ ଦେଶରେ 'ସ୍ୱରାଜ' ଶବ୍ଦର ଅର୍ଥ ଓ ବିଲାତରେ 'ହୋମରୁଲ' ଶବ୍ଦର ଅର୍ଥ—ଏ ଦୁଇ ଅର୍ଥ ମଧ୍ୟରେ ଅସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଅତଏବ ଏହାକୁ ନିୟମତନ୍ତ୍ର ମୂଳକ ସ୍ୱାୟତ୍ତଶାସନ ଆଖ୍ୟା ଦେବା ସଙ୍ଗତ । ଯାହାହେଉ ଆପଣମାନେ ଏହାକୁ ଯେ କୌଣସି ନାମ ଦିଅନ୍ତୁ, ମୋହର ତହିଁରେ କିଛି ଆପତ୍ତି ନାହିଁ । ମୋ ପକ୍ଷରେ ସବୁ ସମାନ ।"

\+ \+ \+ \+

"ଗତ ୩୦ ବର୍ଷ ମଧ୍ୟରେ ଆମ୍ଭେମାନେ କଂଗ୍ରେସରେ ଯେଉଁସବୁ ପ୍ରସ୍ତାବ ପାଶ୍ କରି ଆସିଅଛୁଁ, ତହିଁ ମଧ୍ୟରେ ଏହିଟି ମୂଳ ଓ ସାର କଥା । କେବଳ ଏହି ଗୋଟିଏ କଥାରେ ମନ ଦେଇ ଲାଗି ପଡ଼ିଲେ, ଶେଷରେ ଆମ୍ଭମାନଙ୍କର କାର୍ଯ୍ୟ ନିଶ୍ଚୟ ସିଦ୍ଧ ହେବ । ବର୍ତ୍ତମାନ କଂଗ୍ରେସରେ ବାଜେ କେତୋଟା କଥା ଆଲୋଚନା କରି ଆମ୍ଭମାନଙ୍କର ଶକ୍ତି କ୍ଷୟ କରିବାର ଆବଶ୍ୟକତା ନାହିଁ । ଏହି ସ୍ୱାୟତ୍ତଶାସନ-ସମ୍ବନ୍ଧୀୟ ଗୋଟିଏ ପ୍ରସ୍ତାବ ମଧ୍ୟରେ କଂଗ୍ରେସର ସମସ୍ତ ପ୍ରସ୍ତାବ ନିହିତ ରହିଅଛି ଏବଂ ପ୍ରସ୍ତାବଟି କାର୍ଯ୍ୟରେ ପରିଣତ କରିବା ନିମିତ୍ତ ମୁଁ ଆପଣମାନଙ୍କର ସମସ୍ତ ଶକ୍ତି, ସମସ୍ତ ଚେଷ୍ଟା, ସମସ୍ତ ଉତ୍ସାହ ପ୍ରୟୋଗ କରିବାକୁ ଆପଣମାନଙ୍କୁ ଅନୁରୋଧ

କରୁଅଛୁ । ଆପଣମାନେ ମନେ କରିବେ ନାହିଁ, ଏଇଟି ଖୁବ୍ ସହଜ କାମ । ଏହି କଂଗ୍ରେସ ମଣ୍ଡପରେ କେବଳ ଗୁଡ଼ିଏ ପ୍ରସ୍ତାବ ପାଶ୍ କରି ଦେବାରେ କିଛି ଲାଭ ନାହିଁ, କି ହିନ୍ଦୁ, ମୁସଲମାନ, ଚରମପନ୍ଥୀ ନରମ ପନ୍ଥୀଙ୍କ ମିଳନରେ କିଛି ଲାଭ ନାହିଁ । କାରଣ ଏପରି ମିଳନର ଉଦ୍ଦେଶ୍ୟ—ଆମ୍ଭ-ମାନଙ୍କ ଶକ୍ତି ସାମର୍ଥ୍ୟ ବଢ଼ାଇବା ଏବଂ ଯଦି ସେହି ଶକ୍ତି ସାମର୍ଥ୍ୟ ଆମ୍ଭେ-ମାନେ ପ୍ରାଣପଣେ ସ୍ୱରାଜ ପ୍ରାପ୍ତି ନିମନ୍ତେ ନ ଲଗାଉ, ତେବେ ତାହାର ମୂଲ୍ୟ କିଛି ନାହିଁ । ଏହାପରେ କଂଗ୍ରେସର ଯଦି ସାଧାରଣ ଅଧିବେଶନ ନ ହୁଏ, ତେବେ ମୁଁ ଏଥିପାଇଁ ତିଳେମାତ୍ର ଦୁଃଖିତ ହେବି ନାହିଁ । କଂଗ୍ରେସର ବାର୍ଷିକ ଅଧିବେଶନର ଦିନ ଚାଲିଯାଇଛି । ବର୍ତ୍ତମାନ କେବଳ କାର୍ଯ୍ୟକାରୀ ସ୍ୱରାଜ-ପ୍ରାପ୍ତିର ଉପାୟଗୁଡ଼ିକ କାର୍ଯ୍ୟରେ ପରିଣତ କରିବାପାଇଁ ଆମ୍ଭମାନଙ୍କୁ ଖୁବ୍ ସାହସର ସହିତ ଲାଗି ପଡ଼ିବାକୁ ହେବ ।''

୧୯୧୭ ମସିହା କଲିକତା କଂଗ୍ରେସରେ ତିଳକ ମହାରାଜ ଯୋଗ ଦେଇଥିଲେ । ସେ ସ୍ୱାୟତ୍ତଶାସନ ବିଷୟକ ପ୍ରସ୍ତାବ ଦୃଢ଼ଭାବରେ ସମର୍ଥନ କରି ଏକ ଦୀର୍ଘ ବକ୍ତୃତା ଦେଇଥିଲେ । କଂଗ୍ରେସରେ ପୁଣି ଗୃହବିବାଦର ସୂତ୍ରପାତ ଦେଖି ସେ ତାହା ନିଷ୍ପତ୍ତି କରିଦେବା ନିମନ୍ତେ ବିଶେଷ ଯତ୍ନ କରିଥିଲେ ଏବଂ ସମସ୍ତଙ୍କୁ ସଂଯତ ଭାବେ କାର୍ଯ୍ୟ କରିବାପାଇଁ ଉପଦେଶ ଦେଇଥିଲେ । ଏଥିରେ ତାଙ୍କର ଅସାଧାରଣ ଧୈର୍ଯ୍ୟ ଓ ଶାନ୍ତ ପ୍ରକୃତିର ବିଶେଷ ପରିଚୟ ମିଳିଥିଲା ।

---

# ସହଯୋଗୀତା ବର୍ଜ୍ଜନ

ଜଗଦ୍‌ବରେଣ୍ୟ ମହାତ୍ମା ଗାନ୍ଧି ଅସହଯୋଗ ଆନ୍ଦୋଳନର ପ୍ରଥମ ପ୍ରବର୍ତ୍ତକ ସନ୍ଦେହ ନାହିଁ, କିନ୍ତୁ ଲୋକମାନ୍ୟ ତିଲକଙ୍କ ଜୀବନରେ ଓ କାର୍ଯ୍ୟକଳାପରେ ସହଯୋଗୀତା ବର୍ଜନର ମୂଳମନ୍ତ୍ର ପରିସ୍ଫୁଟ ହୋଇଥିବାର ଦେଖିବାକୁ ମିଳେ । ତିଲକ ମହାରାଜ କଲିକତାର ଏକ ବିରାଟ ସଭାରେ ବକ୍ତୃତା ପ୍ରସଙ୍ଗରେ କହିଥିଲେ :—

"ଅମଲାତନ୍ତ୍ର ଶାସନ ଫଳରେ ଆମ୍ଭମାନଙ୍କର ଶିଳ୍ପ, ବାଣିଜ୍ୟ ନଷ୍ଟ ହୋଇଯାଉଅଛି । ଆମ୍ଭମାନଙ୍କ ଧନ, ଦୌଲତ ସବୁ ବିଦେଶକୁ ଚାଲିଯାଉଛି । ଆମ୍ଭେମାନେ ଦୁର୍ଦ୍ଦଶାର ଚରମ ସୀମାରେ ଉପସ୍ଥିତ ହୋଇ-ଅଛୁଁ । ଏ ଦୁଃଖ ଦୁର୍ଦ୍ଦଶାରୁ ମୁକ୍ତିଲାଭର ଉପାୟ କଣ ?

ଉପାୟ—ଆବେଦନ, ନିବେଦନ ନୁହେଁ ।
ଉପାୟ—ବୟକଟ୍ ବା ବିଦେଶୀ ବର୍ଜ୍ଜନ ।

ମୁଁ କହୁଛି, ଆପଣମାନେ ବଳ ସଂଗ୍ରହ କରନ୍ତୁ, ଶକ୍ତି ନିୟନ୍ତ୍ରିତ କରନ୍ତୁ ଏବଂ ଏପରି ଭାବରେ କାର୍ଯ୍ୟ କରନ୍ତୁ, ଯେପରି ଆମ୍ଭମାନଙ୍କର ଦାବୀ ଅଗ୍ରାହ୍ୟ ହୋଇ ନ ପାରେ । ମହାଭାରତରେ କଥିତ ଅଛି—ଶ୍ରୀକୃଷ୍ଣ ପାଣ୍ଡବ ମାନଙ୍କ ଦ୍ୱାରା କୌରବ ସଭାରେ ସନ୍ଧି ପ୍ରସ୍ତାବ ପାଇଁ ପ୍ରେରିତ ହୋଇଥିଲେ ସୁଦ୍ଧା ପାଣ୍ଡବ ଓ କୌରବ ଉଭୟପକ୍ଷ ନିଜ ନିଜର ସୈନ୍ୟ-ସଂଗ୍ରହରେ ମନଯୋଗୀ ଥିଲେ । କାରଣ ସନ୍ଧି ନ ହେଲେ ପୁଣି ଯୁଦ୍ଧ ଚାଲିବ । ବସ୍ତୁତଃ ଏହାହିଁ ରାଜନୀତି । ଯଦି ଆପଣମାନଙ୍କର ଦାବୀ ଅଗ୍ରାହ୍ୟ ହୁଏ, ତେବେ କଣ ଆପଣମାନେ ଯୁଦ୍ଧ କରିବାକୁ ପ୍ରସ୍ତୁତ ଅଛନ୍ତି ? ଯଦି ପ୍ରସ୍ତୁତ ଥାଆନ୍ତି,

ତେବେ ନିଶ୍ଚୟ ଜାଣିବେ, ଆପଣମାନଙ୍କର ଦାବୀ କଦାପି ଅଗ୍ରାହ୍ୟ ହେବ ନାହିଁ । ଯଦି ନ ଥାନ୍ତି, ତେବେ ଆପଣମାନଙ୍କର ଦାବୀ ଚିରକାଳ ପାଇଁ ଅଗ୍ରାହ୍ୟ ହେବ ।

ଆମ୍ଭମାନଙ୍କର ଅସ୍ତ୍ର ନାହିଁ, ଅସ୍ତ୍ରର କୌଣସି ଆବଶ୍ୟକତା ମଧ୍ୟ ନାହିଁ । ସାଧାରଣ ଇସ୍ପାତ ଲୁହାର ଅସ୍ତ୍ରାପେକ୍ଷା ଆମ୍ଭମାନଙ୍କର ଅଧିକ ଶକ୍ତିଶାଳୀ ଅସ୍ତ୍ର ରହିଛି । ତାହା ହେଉଛି—ବୟକଟ୍ ବା ବିଦେଶୀ ବର୍ଜ୍ଜନ ।"

"ଆମ୍ଭେମାନେ ଗୋଟିଏ କଥା ସ୍ପଷ୍ଟ ହୃଦୟଙ୍ଗମ କରି ପାରନ୍ତୁ ଯେ, ସମଗ୍ର ଶାସନ ଯନ୍ତ୍ର ମୁଷ୍ଟିମେୟ ଇଂରେଜ କର୍ତ୍ତୃକ ଚାଳିତ ହେଉଅଛି । ତାହା ପ୍ରକୃତପକ୍ଷେ ଏବଂ ପ୍ରଧାନତଃ ଆମ୍ଭମାନଙ୍କ ସହଯୋଗିତାରେ ଚାଳିତ ହେଉଅଛି । ଆମ୍ଭେମାନେ ସମସ୍ତ ଶାସନ କ୍ଷମତା ନିଜ ହାତରେ ନେବାକୁ ଚାହୁଁ, ଆମ ଘରର ଚାବି ଆମେ ନିଜ ହାତରେ ରଖିବାକୁ ଚାହୁଁ । ସ୍ୱାୟତ୍ତଶାସନ ଆମ୍ଭମାନଙ୍କର ଲକ୍ଷ୍ୟ । ଆପଣମାନେ ଯଦି ମୁକ୍ତି ଚାହାନ୍ତି, ତେବେ ନିଶ୍ଚୟ ତାହା ପାଇ ପାରିବେ । ଯଦି ନ ଚାହାନ୍ତି, ତେବେ ଆପଣମାନଙ୍କର ପତନ ଅନିବାର୍ଯ୍ୟ ।

ଆମ୍ଭେମାନେ ଅସ୍ତ୍ର ଚାହୁଁନା, ଆମ୍ଭମାନଙ୍କର ସାକ୍ଷାତ ପ୍ରତିରୋଧର ଶକ୍ତି ନାହିଁ ସତ୍ୟ, କିନ୍ତୁ ଆମ୍ଭେମାନେ ଆତ୍ମତ୍ୟାଗ ଓ ଆତ୍ମନିଷ୍ଠା ଦ୍ୱାରା ଏପରି ଭାବେ ବିଦେଶୀ ସରକାରର ସହଯୋଗିତା ବର୍ଜନ କରିବୁ, ଯେପରିକି ସେ ଆମ୍ଭମାନଙ୍କ ଉପରେ ରାଜତ୍ୱ କରିପାରିବ ନାହିଁ । ଏହାହିଁ ବୟକଟ୍ । ଏହାକୁହିଁ ଆମ୍ଭେମାନେ ରାଜନୈତିକ ଅସ୍ତ୍ର ବୋଲି କହୁଁ । ରାଜସ୍ୱ ସଂଗ୍ରହରେ ଆମ୍ଭେମାନେ ସେମାନଙ୍କୁ ସାହାଯ୍ୟ କରିବା ନାହିଁ । ସୀମାନ୍ତ ପ୍ରଦେଶରେ ବା ଭାରତ ବାହାରେ ଭାରତୀୟ ଧନ, ରକ୍ତ ଦେଇ

ଆମ୍ଭେମାନେ ସେମାନଙ୍କର ସହାୟତା କରିବୁ ନାହିଁ, ଶାସନ କାର୍ଯ୍ୟ ପରି-ଚାଳନାରେ ଆମ୍ଭେମାନେ ସେମାନଙ୍କୁ ସାହାଯ୍ୟ କରିବୁ ନାହିଁ, ଆମ୍ଭେମାନେ ନିଜର ଅଦାଲତ ସ୍ଥାପନ କରି ଶାସନ କାର୍ଯ୍ୟ ଚଳାଇବୁ । ଯଦି ଆବଶ୍ୟକ ହୁଏ, ତେବେ ଖଜଣା ଦେବା ବନ୍ଦ କରିବୁ । ଆପଣମାନେ କଣ ସମ୍ମିଳିତ ଚେଷ୍ଟାଦ୍ୱାରା ଏସବୁ କରି ପାରିବେ ? ଯେବେ କରିପାରନ୍ତି, ତେବେ କାଲି-ଠାରୁ ଆପଣମାନେ ସ୍ୱାଧୀନ ହେବେ ।''

ରାଜନୀତି କ୍ଷେତ୍ରରେ ତିଲକ ମହାରାଜଙ୍କର ମତାମତ କିପରି ଥିଲା, ସେ କିଭଳି ଭାବରେ କାର୍ଯ୍ୟ କରିବାକୁ ଚାହୁଁଥିଲେ ଓ ଭଲ ପାଉଥିଲେ, ତାହାର ପ୍ରକୃଷ୍ଟ ପରିଚୟ ତାଙ୍କର ଉପରୋକ୍ତ ରାଜନୈତିକ ମତରୁ ସ୍ପଷ୍ଟ ଜଣାପଡ଼େ ।

---

## ନୂଆ ଶାସନ ସଂସ୍କାର

୧୯୧୭ ମସିହା ଅଗଷ୍ଟ ମାସ ତା ୨୦ ରିଖରେ ବ୍ରିଟିଶପାର୍ଲିଆ-ମେଣ୍ଟ ଭାରତରେ ଶୀଘ୍ର ଦାୟିତ୍ୱପୂର୍ଣ୍ଣ ଶାସନପ୍ରଥା ପ୍ରବର୍ତ୍ତନ କରିବେ ବୋଲି ଆଶ୍ୱାସନା ଦେଇଥିଲେ । ଏହି ଘୋଷଣାପରେ ଭାରତ ସରକାର ଓ ଭାରତର ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ସହିତ ପରାମର୍ଶ କରିବାପାଇଁ ଭାରତ ମନ୍ତ୍ରୀ ମିଃ ମଣ୍ଟେଗୁ ଏହିବର୍ଷ ନଭେମ୍ବର ମାସରେ ଭାରତକୁ ଆସିଲେ । ହୋମରୁଲଲିଗ୍ ପକ୍ଷରୁ ତିଲକ ମହାରାଜ ମିଃ ମଣ୍ଟେଗୁଙ୍କ ସହିତ ସାକ୍ଷାତ କରିବାକୁ ଯାଇଥିଲେ । ଏହି ଶାସନସଂସ୍କାର ବ୍ୟବସ୍ଥା ସମ୍ବନ୍ଧରେ ଭାରତର ଅଧିକାଂଶ ଜନସାଧାରଣଙ୍କ ମତାମତ ଯେପରି ବଙ୍ଗଳାର ଜନସାଧାରଣ

ଅବଗତ ହୋଇପାରନ୍ତି, ସେଥିପାଇଁ ତିଲକ ମହାରାଜ ବିଲାତକୁ ଭାରତୀୟ ପ୍ରତିନିଧି ଦଳ ପଠାଇବା ପାଇଁ ସଂକଳ୍ପ କଲେ । ଅଳ୍ପ କେତେକଦିନ ମଧ୍ୟରେ ଏ ଉଦ୍ଦେଶ୍ୟରେ ତିଲକ ମହାରାଜଙ୍କର ଉଦ୍ୟମରେ ଦୁଇଲକ୍ଷ ଟଙ୍କା ସଂଗୃହୀତ ହୋଇଥିଲା । ୧୯୧୮ ମସିହା ମାର୍ଚ୍ଚ ମାସରେ ଉପରୋକ୍ତ ଲିଗ୍ ପକ୍ଷରୁ ୫ ଜଣ ପ୍ରତିନିଧିଙ୍କୁ ବିଲାତ ପଠାଇବାର ସ୍ଥିର ହେଲା । ପ୍ରତିନିଧିମାନେ ମାନ୍ଦ୍ରାଜ ଓ ବୋମ୍ବାଇଠାରୁ କଲମ୍ବୋ ଦେଇ ଜାହାଜରେ ଯିବାର ପ୍ରସ୍ତାବ ହେଲା । ତଦନୁଯାୟୀ ଲୋକମାନ୍ୟ ତିଳକ, ଶ୍ରୀଯୁକ୍ତ ବିପିନଚନ୍ଦ୍ର ପାଲ ପ୍ରମୁଖ ପାଞ୍ଚ ଜଣ ଦେଶର ବିଶିଷ୍ଟ ନେତା ଯଥାସମୟରେ କଲମ୍ବୋରେ ଉପସ୍ଥିତ ହେଲେ । ସେମାନେ ବିଲାତଗାମୀ ଜାହାଜ ଅପେକ୍ଷାରେ ଥିବାବେଳେ ଭାରତ ସରକାରଙ୍କଠାରୁ ବିଲାତ ଗମନନିଷେଧ ସୂଚକ ଏକ ଟେଲିଗ୍ରାମ ପାଇଲେ । ଅଗତ୍ୟା ପ୍ରତିନିଧିମାନଙ୍କୁ ପୁଣି ଫେରି ଆସିବାକୁ ହେଲା ।

୧୯୧୮ ମସିହା ଅପ୍ରେଲ ମାସରେ ବ୍ରିଟିଶ ପ୍ରଧାନ ମନ୍ତ୍ରୀ ଭାରତର ବଡ଼ଲାଟଙ୍କ ନିକଟକୁ ଭାରତରେ ଜର୍ମାନ ଆକ୍ରମଣର ଆଶଙ୍କା ସମ୍ବନ୍ଧରେ ଏକ ଟେଲିଗ୍ରାମ ପଠାଇଲେ । ଏହି ଆଶଙ୍କା ଯେପରି କାର୍ଯ୍ୟରେ ପରିଣତ ହୋଇ ନ ପାରେ, ସେଥିପାଇଁ ଭାରତବାସୀଙ୍କୁ ନେଇ ଏକଯୋଗରେ କାର୍ଯ୍ୟ କରିବାପାଇଁ ପ୍ରଧାନମନ୍ତ୍ରୀ ଭାରତ ସରକାରଙ୍କୁ ଉପଦେଶ ଦେଇଥିଲେ । ଭାରତ ସରକାର, ଭାରତର ରାଜନବର୍ଗ ଓ ନେତାମାନଙ୍କୁ ନେଇ ଦିଲ୍ଲୀରେ ସାମ୍ରାଜ୍ୟଯୁଦ୍ଧ ସମ୍ମିଳନୀ ବସାଇଲେ । ତିଲକ ମହାରାଜ ଓ ଶ୍ରୀମତୀ ଆନିବେସାନ୍ତ ଏହି ସମ୍ମିଳନୀକୁ ନିମନ୍ତ୍ରିତ ହୋଇ ନଥିଲେ । ତେଣୁ ଭାରତର ସବୁଠି ସରକାରଙ୍କର ଏଭଳି ସଙ୍କୀର୍ଣ୍ଣତାର ନିନ୍ଦା ହେବାକୁ ଲାଗିଲା । ପରେ ବୋମ୍ବେରେ ଯେତେବେଳେ ପ୍ରାଦେଶିକ ଯୁଦ୍ଧ ସମ୍ମିଳନୀ ବସିଲା, ସେତେବେଳର ବୋମ୍ବେ ଲାଟ ଲର୍ଡ଼ ଉଇଲିଂଡନ୍ ତିଲକଙ୍କୁ

ସେଥିରେ ଯୋଗ ଦେବାପାଇଁ ନିମନ୍ତ୍ରଣ କରିଥିଲେ । କିନ୍ତୁ ବୋମ୍ବେ ସରକାର ସେତେବେଳେ ତିଲକଙ୍କ ପ୍ରତି ସନ୍ତୁଷ୍ଟ ନ ଥିଲେ । ଯଥାସମୟରେ ସମ୍ମିଳନୀର କାର୍ଯ୍ୟ ଆରମ୍ଭ ହେଲା । ଲର୍ଡ୍ ସାହେବ ତିଲକଙ୍କୁ ଅପମାନିତ କରିବା ନିମିତ୍ତ ଉକ୍ତ ସମ୍ମିଳନୀରେ ହୋମରୁଲ୍ ଆନ୍ଦୋଳନ ବିରୁଦ୍ଧରେ ତୀବ୍ର ସମାଲୋଚନା କରିଥିଲେ । ଶେଷରେ ତିଲକ ମହାରାଜ ରାଜଭକ୍ତିପ୍ରକାଶକ-ପ୍ରସ୍ତାବ ସମର୍ଥନ କରି କହିବାକୁ ଲାଗିଲେ—"ଯେତେଦିନ ପର୍ଯ୍ୟନ୍ତ ଭାରତ-ରେ ସ୍ୱାୟତ୍ତଶାସନ ବ୍ୟବସ୍ଥାର ବିରୋଧି ଆଇନକାନୁନ ସବୁ ରହିଥିବ, ସେତେଦିନ ପର୍ଯ୍ୟନ୍ତ କୌଣସି ଭାରତବାସୀ ଆନ୍ତରିକଭାବେ ରାଜଭକ୍ତି ପ୍ରକାଶ କରିପାରିବେ ନାହିଁ ।" ଏହା କହିବା ମାତ୍ରେ ଲର୍ଡସାହେବ ତିଲକଙ୍କୁ ବକ୍ତୃତାରୁ ନିବୃତ୍ତ ହେବାପାଇଁ ଆଦେଶ ଦେଲେ । ଲର୍ଡଙ୍କ ବ୍ୟବହାରରେ ନିଜକୁ ଅପ-ମାନିତ ମନେକରି ତିଲକ ମହାରାଜ ଓ ତାଙ୍କର ବନ୍ଧୁମାନେ ସଭାସ୍ଥଳ ଛାଡ଼ି ବାହାରି ଆସିଲେ । ଶ୍ରୀଯୁକ୍ତ କେଲକାର, ବମ୍ବେ କ୍ରନିକେଲ ପତ୍ରିକାର ସମ୍ପାଦକ ମିଃ ହର୍ଣ୍ଣିମାନ ଏବଂ ଏସ, ଆର, ବୋମାନଜୀ ପ୍ରଭୃତି ମଧ୍ୟ ତିଲକଙ୍କ ସହିତ ବାହାରି ଆସିଲେ । ପରଦିନ ଲର୍ଡଙ୍କ ବ୍ୟବହାରର ପ୍ରତିବାଦ ପାଇଁ ବୋମ୍ବେ ସହରରେ ଏକ ବିରାଟ ସଭାହେଲା । ମହାତ୍ମାଗାନ୍ଧି ସଭାପତିର ଆସନ ଅଳଙ୍କୃତ କରିଥିଲେ । ସେ ବକ୍ତୃତା ପ୍ରସଙ୍ଗରେ କହିଥିଲେ "ମୋର ମନେହୁଏ ଲର୍ଡସାହେବ ଲୋକମାନ୍ୟ ତିଲକଙ୍କୁ ବକ୍ତୃତା କରିବାକୁ ନ ଦେଇ ଭୟାନକ ଭୁଲ କରିଛନ୍ତି ଏବଂ ଯେଉଁ କାର୍ଯ୍ୟପାଇଁ ସଭା ଆହୂତ ହୋଇଥିଲା, ତହିଁର ଘୋର ଅମଙ୍ଗଳ ସାଧନ କରିଛନ୍ତି । ଲୋକମାନ୍ୟ ତିଲକ ଜନସାଧାରଣଙ୍କ ନିକଟରେ ଦେବତାସଦୃଶ ଏବଂ ତାଙ୍କର ବାକ୍ୟ ସେମାନଙ୍କ ନିକଟରେ ବେଦବାକ୍ୟ । ଲୋକମାନ୍ୟ ତିଲକଙ୍କୁ ଯେ ଅପମାନ କରାଯାଇଛି, ଲର୍ଡ ସାହେବଙ୍କର ଏଥିପାଇଁ ଶୀଘ୍ର କ୍ଷମାପ୍ରାର୍ଥନା କରିବା କର୍ତ୍ତବ୍ୟ । ଯଦି ସେ କ୍ଷମାପ୍ରାର୍ଥନା ନ କରନ୍ତି, ତେବେ ଭବିଷ୍ୟତରେ ଯେଉଁ ସଭାରେ ଲର୍ଡ୍ ଉଇଲିଂଡନ ସଭାପତି ହେବେ, ମୁଁ ସେ ସଭାରେ କଦାପି ଯୋଗ ଦେବି ନାହିଁ ।"

ନୂତନ ଶାସନ-ସଂସ୍କାର ଆଇନ ପ୍ରକାଶିତ ହେଲା, କିନ୍ତୁ ତିଲକ ମହାରାଜ ଏଥିରେ ଗଭୀର ଅସନ୍ତୋଷ ପ୍ରକାଶ କରିଥିଲେ । ତାଙ୍କ ମତରେ ଏହି ଶାସନ-ସଂସ୍କାର ବ୍ୟବସ୍ଥା ଯେତେବେଳେ ଦେଶବାସୀଙ୍କ ଅବସ୍ଥା ପ୍ରତି ଲକ୍ଷ୍ୟ ରଖି କରାଯାଇନାହିଁ, ସେତେବେଳେ ତାହା ଅଗ୍ରାହ୍ୟ କରିବାର କ୍ଷମତା ଦେଶବାସୀଙ୍କ ହାତରେ ଅଛି । ତେଣୁ ଏହା ଗ୍ରହଣୀୟ କି ନୁହେଁ, ଏ ବିଷୟରେ ସେ କିଛି ମତ ବ୍ୟକ୍ତ କରି ନ ଥିଲେ ।

---

## ବିଲାତ ଯାତ୍ରା

ସାର ଭେଲେଣ୍ଟାଇନ୍ ଚିରୋଲ ନାମକ ଜଣେ ସାହେବ ତାଙ୍କର "ଭାରତରେ ଅଶାନ୍ତି" ନାମକ ପୁସ୍ତକରେ ଲୋକମାନ୍ୟ ତିଲକଙ୍କ ବିରୁଦ୍ଧରେ ଅନେକଗୁଡ଼ିଏ ମିଥ୍ୟା ଅଭିଯୋଗର ଉଲ୍ଲେଖ କରିଥିଲେ । ସେଥିପାଇଁ ତିଲକ ମହାରାଜ ସ୍ୱୀୟ ବନ୍ଧୁବାନ୍ଧବ ଓ ଭାରତର ପ୍ରଧାନ ପ୍ରଧାନ ଆଇନଜ୍ଞମାନଙ୍କ ପରାମର୍ଶରେ ଭେଲେଣ୍ଟାଇନ ଚିରୋଲଙ୍କ ବିରୁଦ୍ଧରେ ମାନହାନି ମୋକଦ୍ଦମା ଦାୟର କରିବା ନିମିତ୍ତ ୧୯୧୮ ମସିହା ଅକ୍ଟୋବର ମାସରେ ବିଲାତ ଯାତ୍ରା କରିଥିଲେ । କିନ୍ତୁ ସେଠାରେ ସେ ମୋକଦ୍ଦମ ରେ କୃତକାର୍ଯ୍ୟ ହେଲେ ନାହିଁ ।

ବିଲାତରେ ବିଚାରପତି ଡାର୍ଲିଂ ସାହେବଙ୍କ ଏଜଲାସରେ ମୋକଦ୍ଦମାର ବିଚାର ହୋଇଥିଲା । ତିଲକ ମହାରାଜଙ୍କ ପକ୍ଷରୁ ସାର୍ ଜନ୍ ସାଇମନ୍ ଓ ଚିରୋଲ୍‌ଙ୍କ ପକ୍ଷରୁ ସାର୍ ଏଡ଼ୱାର୍ଡ଼ କାର୍ସନ ବାରିଷ୍ଟର ନିଯୁକ୍ତ ହୋଇଥିଲେ । କ୍ରମାଗତ ଛଅ ସପ୍ତାହ ପର୍ଯ୍ୟନ୍ତ ମୋକଦ୍ଦମା ଚାଲିଲା କିନ୍ତୁ ଜୁରିମାନେ ପ୍ରଥମରୁ ଚିରୋଲ୍‌ଙ୍କ ସପକ୍ଷରେ ରହିବାରୁ ତିଲକ ଶେଷରେ ହାରିଗଲେ । ଭାରତରୁ ତିଲକଙ୍କ ମୋକଦ୍ଦମାର ଖର୍ଚ୍ଚ ନିମନ୍ତେ ତିନି ଲକ୍ଷ ଟଙ୍କା ପଠାଯାଇଥିଲା ।

ନାନା ପ୍ରତିକୂଳ ଅବସ୍ଥାରେ ପଡ଼ି ମଧ୍ୟ ତିଲକ ମହାରାଜ ଦେଶ-ସେବାରୁ କଦାପି ବିରତ ହୋଇ ନ ଥିଲେ । ସେ ବିଲାତରେ ମା ୧୦ ପରନ୍ଧ ଭାରତର ଦାବୀ ସ୍ପଷ୍ଟ ଉପସ୍ଥାପିତ କରିଥିଲେ । ନାନା ସ୍ଥାନରେ ବକ୍ତୃତା ଦେଇ ଏବଂ ପୁସ୍ତକ ଓ ପତ୍ରାଦ ପ୍ରଚାର କରି ସେ ବିଲାତର ଜନସାଧାରଣଙ୍କୁ ଭାରତର ଅବସ୍ଥା ସମ୍ବନ୍ଧରେ ଅନେକ କଥା ଜଣାଇଥିଲେ । ତାଙ୍କର ପ୍ରଚାର ଓ ଆନ୍ଦୋଳନ ଫଳରେ ଆଜ ଭାରତର ଦାବୀ ପୃଥିବୀର ସମସ୍ତ ଦେଶ ଭଲ କରି ବୁଝି ପାରିଛି । ହୃଦୟହୀନ ଅମଲାତନ୍ତ୍ର ଭଲରୂପେ ହୃଦୟଙ୍ଗମ କରି ପାରିଛି ।

ଭାରତର ଅବସ୍ଥା ପ୍ରତି ବିଲାତର ଶ୍ରମିକ ସମ୍ପ୍ରଦାୟର ଦୃଷ୍ଟି ଉପରି ପଡ଼ିବ, ସେଥିଲାଗି ତିଲକ ମହାରାଜ ସର୍ବଦା ସଚେଷ୍ଟ ଥିଲେ ଏବଂ ସେହି ଉଦ୍ଦେଶ୍ୟରେ ସେ ବିଲାତର ଡେଲି ହେରାଲଡ୍ ନାମକ ସମ୍ବାଦ ପତ୍ରରେ ଭାରତ ବିଷୟ ଭଲଭାବେ ଆଲୋଚିତ ହେବାର ବ୍ୟବସ୍ଥା କରିଥିଲେ । ଏଥିପାଇଁ ତାହାଙ୍କୁ ଅନେକ ଅର୍ଥ ବ୍ୟୟ କରିବାକୁ ମଧ୍ୟ ପଡ଼ିଥିଲା । ଭାରତ ବିଷୟରେ ସୁବିଚାର କରିବା ନିମନ୍ତେ ସେ ବିଲାତ ପାର୍ଲିଆମେଣ୍ଟ ମେମ୍ବର-ମାନଙ୍କ ଦ୍ୱାରସ୍ଥହୋଇ ପ୍ରାର୍ଥନା କରୁଥିଲେ । ଶେଷରେ ସତର୍କ ବାଣୀ ଶୁଣାଇ କହୁଥିଲେ, "ବିଲାତର ଲୋକେ, ରାଜଭକ୍ତ ଭାରତୀୟଙ୍କ ଦାବିକୁ ଅନାସ୍ଥା ଦେଖାଇ ଭାରତରେ କଣ ଶହ ଶହ ଆୟରଲାଣ୍ଡ୍ ସୃଷ୍ଟି କରିବେ ?" ଏ ଧମକ ସେତେବେଳେ ବିଲାତ ଲୋକଙ୍କୁ ପ୍ରଳାପ ପରି ଶୁଭିଲା । ସେମାନେ ତିଲକ ମହାରାଜଙ୍କ କଥାରେ କର୍ଣ୍ଣପାତ ସୁଦ୍ଧା କଲେନାହିଁ । ଭାରତ ଯେ ଦିନେ ସତେ ବିଦ୍ରୋହୀ ହୋଇ ଉଠିବ ସତେ ଭାରତରେ ଯେ ଶହ ଶହ ଆୟାରଲାଣ୍ଡର ସୃଷ୍ଟି ହେବ, ଏକଥା ବିଲାତ ଲୋକଙ୍କୁ ସେତେବେଳେ ନିତାନ୍ତ ଅସମ୍ଭବ କଳ୍ପନାପ୍ରସୂତ ବୋଧ ହୋଇଥିଲା । ଜଏଣ୍ଟ୍ ପାର୍ଲିଆମେଣ୍ଟ୍ କମିଟି ଆଗରେ ସେ ହୋମରୁଲ ଲିଗ୍ର ସାକ୍ଷୀରୂପେ ଯେଉଁ ସାକ୍ଷ୍ୟ ଦେଇଥିଲେ, ତାହା ସର୍ବୋତ୍କୃଷ୍ଟ ବିବେଚିତ ହୋଇଥିଲା ।

୧୯୧୯ ମସୀହାରେ ପାଶ୍ଚାତ୍ୟରେ ଯେ ଶାନ୍ତି-ସମ୍ମିଳନୀ ବସିଥିଲା, ସେଠାକୁ ତିଳକ ମହାରାଜ ଗୋଟିଏ ସ୍ମାରକ ପତ୍ର ପଠାଇଥିଲେ । ଭାରତର ଲୋକପ୍ରତିନିଧି ଏ ସମ୍ମିଳନୀରେ ବସନ୍ତୁ ଏବଂ ଭାରତ ସ୍ୱାୟତ୍ତ-ଶାସନର ଅଧିକାରୀ ହେବାପାଇଁ ଉପଯୁକ୍ତ ହୋଇଛି, ଏକଥା ସମ୍ମିଳନୀ ସ୍ୱୀକାର କରୁ ବୋଲି ଉକ୍ତ ସ୍ମାରକପତ୍ରରେ ଲେଖିଥିଲେ ।

ବିଲାତରେ ରହି ଏହିସବୁ ଶ୍ରମ-ସାଧ୍ୟ କାର୍ଯ୍ୟ କରିବାଯୋଗୁଁ ତାଙ୍କର ସ୍ୱାସ୍ଥ୍ୟ ନଷ୍ଟ ହୋଇ ଯାଇଥିଲା ଏବଂ ସେଠାରୁ ଫେରି ଆସି ସେ ପୂର୍ବପରି ଅଧ୍ୟବସାୟର ସହିତ ଅନ୍ୟ କୌଣସି କାର୍ଯ୍ୟ କରି ପାରିଲେ ନାହିଁ ।

୧୯୧୯ ମସୀହାରେ ଯେ ଅମୃତସହରର କଂଗ୍ରେସରେ ଯୋଗଦେଇ କାର୍ଯ୍ୟକାରୀ କମିଟିକୁ ତାହାଙ୍କ ଆଦର୍ଶରେ ଅନୁପ୍ରାଣିତ କରିଥିଲେ । ସେଥର କଂଗ୍ରେସର କାର୍ଯ୍ୟ ସମ୍ପୂର୍ଣ୍ଣଭାବରେ ତାହାଙ୍କ ମତାନୁଯାୟୀ ଗୃହୀତ ହୋଇଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । ବୋମ୍ବେ ପ୍ରଦେଶର ଜାତୀୟ ଦଳର ଉଦ୍ଦେଶ୍ୟ ସିଦ୍ଧି ନିମିତ୍ତ ସେ ଯଥାସାଧ୍ୟ ପରିଶ୍ରମ କରୁଥିଲେ ଏବଂ ଉକ୍ତ ଦଳର କାର୍ଯ୍ୟପ୍ରଣାଳୀ ସ୍ଥିର କରିଦେବା ପାଇଁ ଏକ ଘୋଷଣା ପତ୍ର ମଧ୍ୟ ପ୍ରକାଶ କରିଥିଲେ ।

---

## ଲୋକମାନ୍ୟ ଓ ଗାନ୍ଧିଜୀ

୧୯୨୪ ମସୀହା କଂଗ୍ରେସର ବିଶେଷ ଅଧିବେଶନରେ କଲିକତା ଠାରେ କଂଗ୍ରେସ ଗାନ୍ଧିଜୀଙ୍କ ଅହିଂସା ଅସହଯୋଗ ପ୍ରସ୍ତାବ ଗ୍ରହଣ କଲା-ବେଳକୁ ଲୋକମାନ୍ୟ ତିଳକ ଜୀବିତ ନଥିଲେ । ଗାନ୍ଧିଜୀଙ୍କ ଅହିଂସା

ଅସହଯୋଗ ଆନ୍ଦୋଳନ ଲୋକମାନ୍ୟଙ୍କ ଆଦର୍ଶର ଅବଲମ୍ବନରେ କରାଯାଇଥିଲା । ତିଳକ ଜୀବିତଥିଲେ ସେ ଗାନ୍ଧିଜୀଙ୍କ ଆନ୍ଦୋଳନକୁ ପୂରାପୂରି ସମର୍ଥନ କରିଥାନ୍ତେ । ଗାନ୍ଧିଜୀ ତିଳକଙ୍କ ସମ୍ପର୍କରେ ତାଙ୍କ ଆତ୍ମଜୀବନୀର ଗୋଟିଏ ଅଂଶରେ ଲେଖିଛନ୍ତି :—

"କଂଗ୍ରେସର ବିଶେଷ ଅଧିବେଶନରେ (କଲିକତା) ଲୋକମାନ୍ୟଙ୍କ ଅନୁପସ୍ଥିତି ମୋତେ ବହୁତ ଦୁଃଖ ଦେଲା । ଏ ପର୍ଯ୍ୟନ୍ତ ମୋର ବିଶ୍ୱାସ, ସେ ଯେତେବେଳେ ଜୀବିତ ଥିଲେ, ସେ ନିଶ୍ଚୟ ମୋତେ ତାଙ୍କର ଆଶୀର୍ବାଦ ଦେଇଥାନ୍ତେ । ସେ ମୋ ସହିତ ଏକମତ ନ ହୋଇଥିଲେ ସୁଦ୍ଧା, ସେ ଯଦି ମୋର ବିରୁଦ୍ଧାଚରଣ କରିଥାନ୍ତେ, ତଥାପି ତାଙ୍କର ବିରୋଧ ମତ ଦ୍ୱାରା ମୁଁ ବହୁ ଶକ୍ତି ଓ ଶିକ୍ଷା ଲାଭ କରିଥାନ୍ତି । ସବୁବେଳେ ଆମ ଦୁହିଁଙ୍କର ମତର ଅନୈକ୍ୟ ରହିଥିଲା ; କିନ୍ତୁ ସେଥିଯୋଗୁଁ କେବେ କୌଣସି ପ୍ରକାର ତିକ୍ତତା ଉପୁଜି ନଥିଲା । ତାଙ୍କ ବ୍ୟବହାରରେ ମୁଁ ସମ୍ପୂର୍ଣ୍ଣ ବିଶ୍ୱାସ କରିଥିଲି, ତାଙ୍କ ସହିତ ମୋର ସମ୍ବନ୍ଧ ଅତି ନିକଟ ଓ ଘନିଷ୍ଠ । ଏହି କେତେ ଧାଡ଼ି ଲେଖିଲା-ବେଳେ ମୋ ଚକ୍ଷୁ ସମକ୍ଷରେ ତାଙ୍କ ମୃତ୍ୟୁଦିବସ ଆସିଯାଏ । ପଣ୍ଡିତ ବର୍ଦ୍ଧନ ସେହି ଅଧରାତିରେ ଟେଲିଫୋନ ଯୋଗେ ତାଙ୍କ ମୃତ୍ୟୁ ବାର୍ତ୍ତା କହିଲେ । ଅପ୍ରତ୍ୟାଶିତ ଭାବେ ମୋ ମୁହଁରୁ ଏହି ପଦଗୁଡ଼ିକ ନିଃସୃତ ହୋଇଗଲା :—

"ମୋର ଦୃଢ଼ତମ ଆଶ୍ରୟ ଚାଲିଗଲା" ।

---

## ଆଦର୍ଶ ଚରିତ୍ର

ଲୋକମାନ୍ୟ ତିଳକଙ୍କ ଚରିତ୍ରର ଯାହାକିଛି ବିଶେଷତ୍ୱ, ତାହା ତାଙ୍କର କାର୍ଯ୍ୟକଳାପରେ ପରିସ୍ଫୁଟ ହୋଇଥିଲା । ସେ ଯେ ସରଳତାର ପ୍ରତିମୂର୍ତ୍ତି

ଥିଲେ, ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । ତାହାଙ୍କର ପୋଷାକ ପରିଚ୍ଛଦରେ କୌଣସିପ୍ରକାର ବିଳାସର ଚିହ୍ନ ନଥିଲା । ନିଷ୍ଠାବାନ ବ୍ରାହ୍ମଣର ସାଧାରଣ ପୋଷାକହିଁ ସେ ସବୁ ଋତୁରେ ଓ ସକଳ କାର୍ଯ୍ୟକ୍ଷେତ୍ରରେ ବ୍ୟବହାର କରୁଥିଲେ । ସେ କଦାପି ଭ୍ରମରେ ପଡ଼ି ମଧ୍ୟ ପାପ କାର୍ଯ୍ୟରେ ହସ୍ତକ୍ଷେପ କରୁନଥିଲେ । ତିଲକଙ୍କର ପରମ ଶତ୍ରୁ ମଧ୍ୟ କଦାପି ତାଙ୍କ ଚରିତ୍ରରେ କଳଙ୍କ ଆରୋପ କରିବାକୁ ସାହସୀ ହୋଇନାହିଁ । ଧନୀ, ଦରିଦ୍ର, ଯୁବକ ବୃଦ୍ଧ, ଉଚ୍ଚ, ନୀଚ ସମସ୍ତଙ୍କ ପ୍ରତି ତାଙ୍କର ସମାନ ସ୍ନେହ ଓ ସହାନୁଭୂତି ଥିଲା । ସେ ସ୍ୱଭାବତଃ ବେଶୀ କଥା କହିବାକୁ ଭଲ ପାଉ ନ ଥିଲେ । ଏଣୁ କେହି କେହି ତାଙ୍କ ସମ୍ବନ୍ଧରେ ଭୁଲ ଧାରଣା କରି ବସୁଥିଲେ । ତିଲକଙ୍କ ବିରୁଦ୍ଧରେ ଲୋକସାଧାରଣଙ୍କ ମନରେ ଭ୍ରାନ୍ତ ଧାରଣା ବଦ୍ଧମୂଳ କରିବାର ଚେଷ୍ଟା ତାଙ୍କର ଶତ୍ରୁମାନେହିଁ କେବଳ କରୁଥିଲେ । କିନ୍ତୁ ସେଥିପ୍ରତି ତାଙ୍କର ଆଦୌ ଭ୍ରୂକ୍ଷେପ ନଥିଲା । ତିଲକ ଆତ୍ମପ୍ରତିଷ୍ଠା ନିମିତ୍ତ କେବେହେଁ ବ୍ୟାକୁଳ ହେଉ ନ ଥିଲେ । ସେ ନିଷ୍କାମ କର୍ମଯୋଗୀ, କେବଳ କର୍ମହିଁ ତାଙ୍କର ଜୀବନର ମୂଳମନ୍ତ୍ର ଥିଲା । ଲୋକମାନ୍ୟ ତିଲକ ନିଜର ଜୀବନର ଆଦର୍ଶ ଓ ବ୍ରତକୁ ନିମ୍ନୋକ୍ତ ଭାଷାରେ ଘୋଷଣା କରିଥିଲେ—

"ମୁଁ ଭାରତକୁ ମୋର ମାତା ଓ ଦେବୀ ରୂପେ ପୂଜା କରେ । ଭାରତୀୟ ଜନତାକୁ ମୋର ଆତ୍ମୀୟ ସ୍ୱଜନ ମନେ କରେ । ସେହିମାନଙ୍କର ରାଜନୈତିକ ଓ ସାମାଜିକ ଉଦ୍ଧାର ପାଇଁ ନିଷ୍ଠା ଓ ଅନୁରକ୍ତି ସହିତ କାର୍ଯ୍ୟ କରିବାକୁ ମୁଁ ମୋର ପରମଧର୍ମ ଓ କର୍ତ୍ତବ୍ୟ ମନେ କରେ ।"

ତିଲକଙ୍କର ଦେଶ ପ୍ରୀତି ଅସାଧାରଣ ଥିଲା । ସେ କହୁଥିଲେ "ଜନନୀ ଜନ୍ମଭୂମିର ମୁକ୍ତି ବ୍ୟତୀତ ମୋହର ଅନ୍ୟ କାମନା ନାହିଁ, ଅନ୍ୟ ଲକ୍ଷ୍ୟ ନାହିଁ" । ଯଦି କେହି ତାଙ୍କୁ ପଚାରୁଥିଲେ, ଆପଣଙ୍କର ଧର୍ମ କଣ ? ସେ ଉତ୍ତର ଦେଉଥିଲେ "ଦେଶ ମୋହର ଧର୍ମ, ଦେଶ ମୋହର ମିତ" । ନିଜ ଦେଶଛଡ଼ା ସେ

ଆଉ କିଛି ଜାଣି ନଥିଲେ । ତେଣୁ ଦେଶସେବା ଓ ଦେଶକୁ ଦାସତ୍ୱ ଶୃଙ୍ଖଳରୁ ମୁକ୍ତ କରିବାର ଚେଷ୍ଟା—ଏହି ଦୁଇଟି କାର୍ଯ୍ୟକୁ ସେ ନିଜ ଜୀବନର ଶ୍ରେଷ୍ଠ କାର୍ଯ୍ୟରୂପେ ଗ୍ରହଣ କରି ନେଇଥିଲେ । ତାଙ୍କ ପୂର୍ବରୁ ଯେଉଁମାନେ ଦେଶ-ସେବାକୁ ଜୀବନର ବ୍ରତ କରି ବାହାରି ଥିଲେ, ସେମାନେ ହୁଏତ ଥିଲେ ନରମପନ୍ଥୀ ବା ପ୍ରାଦେଶିକ ସ୍ୱାର୍ଥପନ୍ଥୀ । ତେଣୁ ସମସ୍ତ ଦେଶକୁ ପ୍ରକୃତ ମୁକ୍ତି ମାର୍ଗରେ ଚଳାଇବା ପାଇଁ ସେମାନଙ୍କ ପ୍ରାଣରେ ପ୍ରେରଣା ନ ଥିଲା, କିନ୍ତୁ ତିଳକ ମହାରାଜ ସେମାନଙ୍କ ସଂସ୍ପର୍ଶରେ ଆସି ସେମାନଙ୍କ ପ୍ରଭାବରେ ପଡ଼ିବାରେ ସବୁବେଳେ ଆଶଙ୍କା କରୁଥିଲେ ସୁଦ୍ଧା ସେ ଏସବୁ କ୍ଷୁଦ୍ରତା ଗୋଡ଼ରେ ଫିଙ୍ଗି ଏତେ ଉପରକୁ ଉଠିଥିଲେ ଯେ ତାହା ଆଉ କେବେ, କାହା ପକ୍ଷରେ ସମ୍ଭବ ହୋଇ ନ ଥିଲା । ସବୁ କାର୍ଯ୍ୟରେ, ସବୁ ବିଷୟରେ ନୂତନତ୍ୱ, ଏହାହିଁ ତିଳକଙ୍କ ଚରିତର ବିଶେଷତ୍ୱ ଥିଲା । ତାଙ୍କର ଅଦମ୍ୟ ଉତ୍ସାହ ଓ ଅତି ମାନୁଷ ତେଜ, ତାହାଙ୍କର କର୍ମ କ୍ଷେତ୍ରରେ ସର୍ବଦା ପ୍ରକାଶ ପାଉଥିଲା । ସେ କର୍ମବୀର, ତେଣୁ ବିଶ୍ରାମ ତାଙ୍କୁ ଆଦୌ ଭଲ ଲାଗୁ ନ ଥିଲା । ନାନା ପ୍ରତିକୂଳ ଅବସ୍ଥା ମଧ୍ୟରେ ପଡ଼ି ସୁଦ୍ଧା ସେ ନିଜ କର୍ତ୍ତବ୍ୟ ସମ୍ପାଦନରେ ଅଧିକ ସନ୍ତୋଷ ଲାଭ କରୁଥିଲେ ।

---

## ଶେଷଜୀବନ

ବୋମ୍ବେ ପ୍ରଦେଶସ୍ଥ କୋଲବା ଜିଲାରେ ଅନୁଷ୍ଠିତ ତିଳକ ମହାରାଜ-ଙ୍କର ପଞ୍ଚଷଷ୍ଠିତମ ଜନ୍ମଦିବସ ଉତ୍ସବୋପଲକ୍ଷେ ତିଳକ ମହାରାଜଙ୍କୁ ନିମନ୍ତ୍ରଣ କରା ଯାଇଥିଲା । କୋଲବାଠାରୁ ବୋମ୍ବେ ଫେରିବା ପରେ ତାଙ୍କର ଶରୀର ଅସୁସ୍ଥ ହୋଇପଡ଼ିଲା । କ୍ରମେ ନିମୋନିୟା ଓ ହୃଦବେଗ ଉପସ୍ଥିତ

ହେଲ । ୧୯୨୦ ମସୀହା ଅଗଷ୍ଟ ପହିଲା ଦିନ ଭାରତର ପ୍ରସିଦ୍ଧ ନେତା, ଅକ୍ଲାନ୍ତକର୍ମୀ, ପୁରୁଷସିଂହ ତିଲକ ଭାରତବାସୀଙ୍କୁ ଶୋକ ସାଗରରେ ଭସାଇ ଦେଇ ଅମରଧାମକୁ ପ୍ରସ୍ଥାନ କଲେ । ମୃତ୍ୟୁ ପୂର୍ବରୁ ତିଲକ ମହାରାଜ ବୋମ୍ବେ ସହରସ୍ଥ ତାଙ୍କର ପ୍ରିୟ ସର୍ଦ୍ଦାରଙ୍କ ଗୃହରେ ଅବସ୍ଥାନ କରୁଥିଲେ । ସେଠାରେ ତାଙ୍କର ଆତ୍ମୀୟ ସ୍ୱଜନ ଓ ବନ୍ଧୁବାନ୍ଧବ ସମସ୍ତେ ଉପସ୍ଥିତ ଥିଲେ । ଅସୁସ୍ଥ ହେବା ଦିନଠାରୁ ତିଲକ ମହାରାଜ କେବଳ ଧର୍ମାଲୋଚନାରେ ପ୍ରବୃତ୍ତ ଥିଲେ । ଗୀତାର ଭଲ ଭଲ ଶ୍ଳୋକଗୁଡ଼ିକ ସେ ମଝେ ମଝେ ଆବୃତ୍ତି କରୁଥିଲେ ଏବଂ ମୃତ୍ୟୁର କେତେକ ମିନିଟ୍ ପୂର୍ବରୁ ସେ ଗୀତାର ଚତୁର୍ଥ ଅଧ୍ୟାୟର ସପ୍ତମ ଶ୍ଳୋକଟି ଆବୃତ୍ତି କରୁଥିଲେ :—

"ଯଦା ଯଦାହି ଧର୍ମସ୍ୟ, ଗ୍ଲାନିର୍ଭବତି ଭାରତ,
ଅଭ୍ୟୁତ୍‌ଥାନ ମଧର୍ମସ୍ୟ, ତଦାତ୍ମାନଂ ସୃଜାମ୍ୟହଂ "।
"ପରିତ୍ରାଣାୟ ସାଧୁନାଂ ବିନାଶାୟ ଚ ଦୁଷ୍କୃତାଂ,
ଧର୍ମ ସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

ଏହିପରି ଆବୃତ୍ତି କରୁ କରୁ ଧୀରେ ଧୀରେ ଏହି ମହାବୀରଙ୍କର ତିରୋଧାନ ହେଲା । ତିଲକ ମହାରାଜାଙ୍କର ମୃତ୍ୟୁ ସମ୍ବାଦ ସହରରେ ପ୍ରଚାରିତ ହେବା ମାତ୍ରେ ସହସ୍ର ସହସ୍ର ନରନାରୀ ସର୍ଦ୍ଦାରଙ୍କ ଗୃହରେ ସମବେତ ହୋଇଥିଲେ । ପୁଷ୍ପମାଲ୍ୟ-ସୁଶୋଭିତ ତାଙ୍କର ମୃତଦେହ ଏକ ବିରାଟ ଶୋଭାଯାତ୍ରାରେ ବୋମ୍ବେର ବିଭିନ୍ନ ରାଜପଥ ଦେଇ ଚୌପଟ୍ଟିର ବାଲୁକାଭୂମିକୁ ନିଆଗଲା । ଏଥିପୂର୍ବରୁ ଅନ୍ୟ କାହାରି ମୃତ ଦେହ ସେଠାରେ ଦାହ କରାଯାଇନଥିଲା ସମୁଦ୍ର ସୈକତରେ ତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ଯଥାବିଧି ସମ୍ପନ୍ନ କରାଯାଇଥିଲା । ମହାତ୍ମାଗାନ୍ଧି, ସର୍ବଶ୍ରୀ ବି. ଏସ୍. ମୁଞ୍ଜେ, ଖାପର୍ଦ୍ଦେ, ଦେଶପାଣ୍ଡେ, ଶ୍ରୀମତୀ ସରଳା ଦେବୀ (ବଙ୍ଗଳା), ମୌଲାନା ସୌକତ ଅଲ୍ଲି, ସ୍ତ୍ରୋଟାନ, ବ୍ୟାପ୍‌ଟିସ୍ତା ପ୍ରମୁଖ ବହୁ ହିନ୍ଦୁ, ମୁସଲମାନ ନେତା ଅନ୍ତ୍ୟେଷ୍ଟି କ୍ରିୟାରେ ଯୋଗ ଦେଇଥିଲେ ।

ପଞ୍ଜାବ କେଶରୀ ଲାଲା ଲଜପତ ରାୟ ଶ୍ମଶାନ ଭୂମିରେ ତିଳକ ମହାରାଜଙ୍କ ଗୁଣକୀର୍ତ୍ତନ ପୂର୍ବକ ଏକ ସମୟୋପଯୋଗୀ ଭାଷଣ ଦେଇଥିଲେ ।

ତିଳକ ମହାରାଜଙ୍କ ମୃତ୍ୟୁରେ ସାରା ଭାରତରେ ଗମ୍ଭୀର ହାହାକାର ଧ୍ୱନି ଉତ୍ଥିତ ହୋଇଥିଲା । ପରଲୋକଗତ ଆତ୍ମାର ଶାନ୍ତିବିଧାନ ଉଦ୍ଦେଶ୍ୟରେ ଭାରତର ସହର, ଗ୍ରାମ୍ୟ, ମନ୍ଦିର, ମସଜିଦ ଆଦି ସର୍ବତ୍ର ଶୋକସଭାମାନ ଅନୁଷ୍ଠିତ ହୋଇଥିଲା ।

ଲୋକମାନ୍ୟ ତିଳକ ଦେଶବାସୀଙ୍କ ହୃଦୟ ଯେ କି ପରିମାଣରେ ଅଧିକାର କରିଥିଲେ, ତାହା ତାଙ୍କର ଏହି ଶେଷ ଜୀବନରେ ସ୍ପଷ୍ଟ ପ୍ରକାଶ ପାଇଥିଲା ।

---

## ଉପସଂହାର

ଦେଶାତ୍ମବୋଧ ତିଳକ ମହାରାଜଙ୍କର ଅସ୍ଥି ମଜ୍ଜାଗତ ଥିଲା । ଭାରତୀୟ ସଂସ୍କୃତିର ପ୍ରତିଷ୍ଠା, ପରିସର ଓ ପ୍ରଗତି ସେ ସର୍ବଦା ଅନୁଧ୍ୟାନ କରୁଥିଲେ । ଏପରି ସମୃଦ୍ଧ ଭାବରେ ଜାତିର ବ୍ୟକ୍ତିତ୍ୱକୁ ଅନୁଭବ କରିବା ଏ କାଳରେ ବହୁତ ବେଶୀ ଲୋକଙ୍କଠାରେ ଦେଖାଯାଏ ନାହିଁ । ତିଳକଙ୍କର ସମସ୍ତ କର୍ମମୟ ଜୀବନ, ତାଙ୍କର ବହୁମୁଖୀ ପ୍ରତିଭା ସମୃଦ୍ଧ ଜାତୀୟ ବ୍ୟକ୍ତିତ୍ୱକୁ ପ୍ରଭାବିତ କରି ରଖିଥିଲା । ସେ ଯେଉଁ ଯୁଗରେ କର୍ମ କରିଥିଲେ, ସେ ଯୁଗ ନିର୍ମାତାର, ସେ ଏକ ଅବତାର ଥିଲେ । ସେ ବାରମ୍ବାର କାରାଦଣ୍ଡ ଭୋଗି ଥିଲେ । ପ୍ରଥମ କାରାବାସ ବେଳେ ଜାତିର ପ୍ରାଚୀନତା ଓ ପ୍ରତିଷ୍ଠା, ଦ୍ୱିତୀୟ କାରାବାସ ବେଳେ ଜାତିର ପ୍ରକୃତି, ପରିସର ଓ ପରିସ୍ଥିତି ଚିନ୍ତାରେ ଆତ୍ମ

ନିୟୋଗ କରି, ଯେ ସେହି ଚିନ୍ତାର ଫଳ ଜଗତକୁ ଦାନ କରିଯାଇ ଅଛନ୍ତି । ଭାରତର ଜାତୀୟ ଜୀବନରେ ସେ ଯେଉଁ ନୂତନ ପନ୍ଥା ଫିଟାଇ ଥିଲେ, ତାହାର ପ୍ରଭାବ ଏବେ ମଧ୍ୟ ପୂର୍ଣ୍ଣ ରହିଛି ।

ତିଳକ ମହାରାଜ ଦେଶର ପରାଧୀନତାର ଅନ୍ଧକାର ମଧ୍ୟରେ ପ୍ରଥମେ ସ୍ୱାଧୀନତାର ଆଲୋକ ରେଖା ଦେଖିଥିଲେ । ବେଦ, ଶାସ୍ତ୍ର, ଦର୍ଶନ, ବିଜ୍ଞାନ, ଗଣିତ, ଜ୍ୟୋତିଷ, ସମସ୍ତ ବିଷୟରେ ସେ ପୃଥିବୀରେ ଜଣେ ପ୍ରଧାନ ପଣ୍ଡିତ ଥିଲେ । ଗତ ଶତାବ୍ଦୀ ଶେଷରେ ଯେତେବେଳେ ଭାରତରେ କେହି ସ୍ୱାଧୀନତାର ଆଲୋକ ଦେଖି ଘୋର ପରାଧୀନତାଭେଦ କରିବାକୁ ସାହସ କରି ନ ଥିଲେ, ସେତେବେଳେ ସେ ଶିବାଜୀଙ୍କ ନାମ ଧରି ଉତ୍ସବକରି ପ୍ରଥମେ ଅଠର-ମାସ ଜେଲଦଣ୍ଡ ଭୋଗିଥିଲେ । ସେକାଳର ପଣ୍ଡିତବର ମିଷ୍ଟର୍ ମାକ୍ସମୁଲର୍ ତିଳକଙ୍କ ଓରାୟନ ଗ୍ରନ୍ଥ ପଢ଼ି ମହାରାଣୀ ଭିକ୍ଟୋରିୟାଙ୍କୁ କହିଥିଲେ, "ଏପରି ମହାପୁରୁଷଙ୍କୁ ଜେଲରେ ରଖିବା ଇଂରେଜ ସାମ୍ରାଜ୍ୟର ଘୋର ଦୁର୍ନାମ" । ସେଥିକରେ ମହାରାଣୀ ତିଳକଙ୍କୁ ମୁକ୍ତ ଦେଇଥିଲେ । ଜେଲରୁ ମୁକ୍ତିଲାଭ କରି ସେ ଦିନକ ପାଇଁ ସୁଦ୍ଧା ନିଜର ପ୍ରଚେଷ୍ଟା ଓ ପୁରୋଦୃଷ୍ଟି ଭୁଲି ନ ଥିଲେ । କୌଣସି କଥାକୁ ତାଙ୍କର ଭ୍ରୂକ୍ଷେପ ନ ଥିଲା । ଦେଶର ସ୍ୱାଧୀନତା ପାଇଁ ସ୍ପଷ୍ଟ ଓ ତୀବ୍ର ସଂଗ୍ରାମ ତାଙ୍କର ଏକମାତ୍ର ଲକ୍ଷ୍ୟ ଥିଲା । ସେହି ଆଦର୍ଶରେ ଦୃଷ୍ଟିରଖି, ସେହି କର୍ମର ଏକାନ୍ତ ପ୍ରେରଣା ଭିତରେ ୧୯୨୦ ମସିହା ଜୁଲାଇ ମାସରେ ସେ ଦେହ ତ୍ୟାଗ କରିଥିଲେ । ତାଙ୍କର କାର୍ଯ୍ୟଫଳରେ ଅସହଯୋଗର ବାଟ ଏ ଦେଶରେ ଫିଟିଗଲା ।

———

## ଲୋକମାନ୍ୟଙ୍କ ମୃତ୍ୟୁରେ ମହାତ୍ମା ଗାନ୍ଧି

ଲୋକମାନ୍ୟ ତିଳକ ମହାରାଜଙ୍କ ତିରୋଧାନରେ ସମଗ୍ର ଭାରତ ବର୍ଷର ଯେ ଅପୂରଣୀୟ କ୍ଷତି ଘଟିଲା, ତାହା ମହାତ୍ମା ଗାନ୍ଧି ନିମ୍ନଲିଖିତ ଭାବରେ ବ୍ୟକ୍ତ କରିଥିଲେ :—

"ଲୋକମାନ୍ୟ ବାଳଗଙ୍ଗାଧର ତିଳକ ଆଉ ଇହଜଗତରେ ନାହାନ୍ତି । ବର୍ତ୍ତମାନ ସମୟରେ ଦେଶର ଜନସାଧାରଣଙ୍କ ଉପରେ ତାଙ୍କପରି ଆଉ କାହାରି ଏତେଦୂର ପ୍ରଭାବ ନ ଥିଲା । ଦେଶର ସହସ୍ର ସହସ୍ର ଲୋକଙ୍କର ତାଙ୍କପ୍ରତି ଯେ ଭକ୍ତିଥିଲା, ତାହା ଅସାଧାରଣ । ସେ ଦେଶବାସୀଙ୍କ ଦେବତା-ପରି ଜଣା ଯାଉଥିଲେ । ଦେଶବାସୀଙ୍କ ଉପରେ ତାହାଙ୍କର ଏହି ପ୍ରଭାବର କାରଣ କଣ ? ମୋ ମତରେ ପ୍ରଶ୍ନଟିର ଉତ୍ତର ଖୁବ୍ ସହଜ । ଦେଶପ୍ରେମ ଛଡ଼ା ତାଙ୍କର ଅନ୍ୟ କୌଣସି ଧର୍ମ ନଥିଲା । ସେ ଜନ୍ମରୁ ଗଣତନ୍ତ୍ରବାଦୀ ଥିଲେ । ଅଧିକାଂଶଙ୍କ ମତାନୁଯାୟୀ କାର୍ଯ୍ୟ କରିବାକୁ ସେ ଏପରି ଦୃଢ଼ଭାବରେ ବିଶ୍ୱାସ କରୁଥିଲେ ଯେ ତାହା ଦେଖି ମୋର ଭୟ ହେଉଥିଲା ।"

କିନ୍ତୁ ଏହାହିଁ ଥିଲା ତାହାଙ୍କର ପ୍ରଭାବର ମୂଳ କାରଣ । ତାହାଙ୍କର ବଜ୍ରତୁଲ୍ୟ-ଦୃଢ଼-ଶକ୍ତିକୁ ସେ କେବଳ ଦେଶପାଇଁ ଲଗାଇଥିଲେ । ତାହାଙ୍କର ଜୀବନର ଆଦର୍ଶ, ରୁଚି ଓ ଭାବ, ନୀତି ସାଧାରଣ ଏବଂ ବ୍ୟକ୍ତିଗତ ଜୀବନ କଳଙ୍କଶୂନ୍ୟ ଥିଲା । ସେ ତାହାଙ୍କର ଅଦ୍ଭୁତ ଓ ଅସାଧାରଣ ମନୀଷା ଦେଶ କାର୍ଯ୍ୟରେ ଉତ୍ସର୍ଗ କରି ଦେଇଥିଲେ । ଲୋକମାନ୍ୟଙ୍କ ପରି ଏକାନ୍ତ ଭାବରେ ଓ ଦୃଢ଼ତାର ସହିତ ଅନ୍ୟ କେହି ସ୍ୱରାଜ ମନ୍ତ୍ର ପ୍ରଚାର କରି ପାରିନାହାନ୍ତି । ତେଣୁ ତାହାଙ୍କ ପ୍ରତି ଦେଶବାସୀଙ୍କର ଅସୀମ ବିଶ୍ୱାସ ଥିଲା । ସେ କେବେହେଁ କାହାରିକୁ ଭୟ କରୁନଥିଲେ । ତାହାଙ୍କର ଆଶା ଓ ଉତ୍ସାହ ଅଦମ୍ୟ ଥିଲା । ସେ ସର୍ବଦା ବିଶ୍ୱାସ କରୁଥିଲେ ଯେ ତାହାଙ୍କର

ଜୀବିତକାଳ ମଧ୍ୟରେ ସମ୍ପୂର୍ଣ୍ଣରୂପେ ସ୍ୱରାଜ୍ୟ ପ୍ରତିଷ୍ଠିତ ହେବ । ତାହାଙ୍କର ଆଶା ପୂର୍ଣ୍ଣ ହୋଇନାହିଁ; କିନ୍ତୁ ଏଥିରେ ତାଙ୍କର କିଛିମାତ୍ର ଦୋଷନାହିଁ । ସେ ସ୍ୱରାଜର ଗ୍ରୁଞ୍ଜ ତିଆରି କରି ଯାଇଛନ୍ତି । ତାକୁ ନିର୍ମାଣ କରିବା ଭାର ଆମ୍ଭମାନଙ୍କ ଉପରେ ପଡ଼ିଛି ।

ଲୋକମାନ୍ୟ ଅମଲାତନ୍ତ୍ରର ଦାରୁଣ ଶତ୍ରୁ ଥିଲେ । କିନ୍ତୁ ତାହା ବୋଲି ଯେ ସେ ଇଂରେଜ ଅଥବା ଇଂରେଜ ଶାସନକୁ ଘୃଣା କରୁଥିଲେ, ଏହା କୁହାଯାଇ ନପାରେ । ମୁଁ ଇଂରେଜମାନଙ୍କ ମଙ୍ଗଳ ସକାଶେ କହୁଛି, ସେମାନେ ଯେପରି ତିଲକଙ୍କୁ ସେମାନଙ୍କର ଶତ୍ରୁ ବୋଲି ମନେ କରି ଭ୍ରମରେ ନ ପଡ଼ନ୍ତି ।

ଗତ କଲିକତା କଂଗ୍ରେସ ସମୟରେ ହିନ୍ଦିଭାଷାକୁ ଜାତୀୟ ଭାଷାରେ ପରିଣତ କରିବା ବିଷୟରେ ମୁଁ ତାହାଙ୍କର ଗୋଟିଏ ପାଣ୍ଡିତ୍ୟ ପୂର୍ଣ୍ଣ ଆଲୋଚନା ଶୁଣିଥିଲି । ସେ ସେତେବେଳେ କଂଗ୍ରେସ ମଣ୍ଡପରୁ ଫେରିଆସିଥାନ୍ତି । ହିନ୍ଦି ସମ୍ବନ୍ଧରେ ତାଙ୍କର ଆଲୋଚନା ଶୁଣି ମୁଁ ଯଥାର୍ଥ ଆନନ୍ଦ ଅନୁଭବ କଲି ।

ସେ ତାଙ୍କର ବକ୍ତୃତାରେ ଇଂରେଜମାନେ ପ୍ରାଦେଶିକ ଭାଷାଗୁଡ଼ିକର ଯତ୍ନ ନିଅନ୍ତି ବୋଲି ସେମାନଙ୍କୁ ଖୁବ୍ ପ୍ରଶଂସା କରିଥିଲେ । ଇଂରେଜ ଟଗ୍ଭରକମାନଙ୍କ ସମ୍ବନ୍ଧରେ ତାଙ୍କର ଅଭିଜ୍ଞତାର ପରିଣାମ କଷ୍ଟକର ହେଲେହେଁ, ବ୍ରିଟିଶ ପ୍ରଜାତନ୍ତ୍ରରେ ତାଙ୍କର ଏତେଦୂର ଦୃଢ଼ବିଶ୍ୱାସ ଥିଲା ଯେ ସେ ଏହି ଅଦ୍ଭୁତ ପ୍ରସ୍ତାବ ଥରେ କରିଥିଲେ 'ଯେ ସିନେମା ସାହାଯ୍ୟରେ ଇଂଲଣ୍ଡରେ ପଞ୍ଜାବ ଅତ୍ୟାଗ୍ଭର ଘଟଣା ପ୍ରଗ୍ଭର କରାଯାଉ' । ସେ ଇଂରେଜ-ମାନଙ୍କୁ ଘୃଣା କରୁ ନ ଥିଲେ । କେବଳ ଏହା ପ୍ରତିପନ୍ନ କରିବା ନିମିତ୍ତ ମୁଁ ଏହାର ଉଲ୍ଲେଖ କରୁଅଛି । ବ୍ରିଟିଶ ସାମ୍ରାଜ୍ୟ ମଧ୍ୟରେ ଭାରତର ସ୍ଥାନ,

ସାମ୍ରାଜ୍ୟର ଅନ୍ୟାନ୍ୟ ଅଂଶ ଠାରୁ ହୀନ, ଏହା ସେ ମୂହୂର୍ତ୍ତେ ସୁଦ୍ଧା ସହ୍ୟ କରି ପାରୁ ନଥିଲେ । ଭାରତର ଇଂଲଣ୍ଡ ସହିତ ସମାନ ହେବା 'ଜନ୍ମଗତ ଦାବୀ' ଏହା ତାଙ୍କର ବିଶ୍ୱାସ ଥିଲା ଏବଂ ଏହି ସମାନ ଅଧିକାର ଶୀଘ୍ର ହେବାପାଇଁ ସେ ଇଚ୍ଛା କରୁଥିଲେ । ଭାରତର ସ୍ୱାଧୀନତା ମୁଦ୍ଧରେ ସେ ସରକାରଙ୍କୁ ମଧ୍ୟ ଅବ୍ୟାହତି ଦେଉ ନ ଥିଲେ । ମୁଁ ଆଶାକରେ, ଭାରତପୂଜ୍ୟ ଏପରି ମହାନ୍ ଲୋକର ଗୁଣ ଇଂରେଜମାନେ ନିଶ୍ଚୟ ଚିହ୍ନିବେ । ତିଳକ ମହାରାଜ ଆମ୍ଭ-ମାନଙ୍କର ଭାବି ବଂଶଧରମାନଙ୍କ ନିକଟରେ ବର୍ତ୍ତମାନ ଭାରତର ନିର୍ମାତାରୂପେ ପରିଚିତ ହେବେ । ଭାରତବାସୀଙ୍କ ନିମନ୍ତେ ସେ ଜୀବନବ୍ୟାପୀ ପରିଶ୍ରମ କରି ଜୀବନୋତ୍ସର୍ଗ କରିଛନ୍ତି ଏହା ମନେକରି, ସେମାନେ ଚିରଦିନ ତାହାଙ୍କ ସ୍ମୃତିର ଉପାସନା କରିବେ ।

"ତିଳକ ମରି ଯାଇଛନ୍ତି", ଏ କଥା ମୁଖରେ ଉଚ୍ଚାରଣ କରିବା ଅପରାଧ । ତାହାଙ୍କର ଆତ୍ମା ଚିରଦିନ ଆମ୍ଭମାନଙ୍କ ସହିତ ବିଦ୍ୟମାନ ରହିଥିବ । ଆମ୍ଭେମାନେ ଯେପରି ତାହାଙ୍କର ସାହସ, ତାହାଙ୍କର ସରଳତା ତାହାଙ୍କର ଶ୍ରମଶୀଳତା ଓ ତାଙ୍କର ଦେଶପ୍ରୀତି ଆମ୍ଭମାନଙ୍କ ଜୀବନରେ ଗ୍ରହଣ କରି ଭାରତର ଏହି ଅଦ୍ୱିତୀୟ ଲୋକମାନଙ୍କର ଅକ୍ଷୟ ସ୍ମୃତିସ୍ତମ୍ଭ ନିର୍ମାଣ କରୁଁ ଈଶ୍ୱର ତାହାଙ୍କର ଆତ୍ମାର ଶାନ୍ତି ବିଧାନ କରନ୍ତୁ

( ଇୟଙ୍ଗ ଇଣ୍ଡିଆ )

# ପରିଶିଷ୍ଟ

ଲୋକମାନ୍ୟ ତିଲକ କିପରି ସରଳ ପ୍ରକୃତିର, ସ୍ପଷ୍ଟବାଦୀ, ସ୍ୱଦେଶାନୁରାଗୀ ଓ ସମାଜ-ସଂସ୍କାରକ ଥିଲେ, ତାହା ତାଙ୍କ ଜୀବନରେ ନିମ୍ନଲିଖିତ କେତୋଟି ଘଟଣାରୁ ସ୍ପଷ୍ଟ ଜଣାପଡ଼େ :—

ଥରେ ତିଳକଙ୍କର ଜଣେ ବନ୍ଧୁ ତାଙ୍କୁ ପଚାରିଲେ—"ସ୍ୱରାଜ୍ୟ ପ୍ରାପ୍ତି ପରେ ଆପଣ କେଉଁ ପଦ ଗ୍ରହଣ କରିବେ ? ପ୍ରଧାନମନ୍ତ୍ରୀ ବା ସଭ୍ୟ କିଣ ହେବେ" ? ତିଳକ ମହାରାଜ ବିନୀତ ଭାବରେ ପ୍ରତ୍ୟୁତ୍ତର ଦେଇଥିଲେ "ମୁଁ ସ୍ୱରାଜ୍ୟ ସରକାର ଅଧୀନରେ ଗୋଟିଏ କଲେଜର ଗଣିତ ଅଧ୍ୟାପକ ହେବି । ବର୍ତ୍ତମାନ ଯେଉଁ ନୀତିରେ କାମ କରୁଛୁ, ସେଥିରୁ ଅବସର ଗ୍ରହଣ କରିବି । ଆପଣମାନେ କିଛି କରୁ ନାହାନ୍ତି; ଦେଶର ଅନେକ ଅଭାବ ରହିଛି । ଏଣୁ ମୋତେ ସେ ସବୁ ବିଷୟରେ ବର୍ତ୍ତମାନ ଦୃଷ୍ଟି ଦେବାକୁ ପଡ଼ୁଛି "ପ୍ରକୃତରେ ରାଜନୀତି ମୋର କାମ ନୁହେଁ । ସ୍ୱରାଜ୍ୟ ପ୍ରାପ୍ତି ପରେ ମୁଁ ବେଦର ବା ଗଣିତ ଶାସ୍ତ୍ରର ଗବେଷଣା କରିବି । ମୁଁ କେବଳ ଆପଦ୍‌ଧର୍ମ ରୂପେ ରାଜନୀତିକୁ ସ୍ୱୀକାର କରିନେଇଛି ।"

ଲୋକମାନ୍ୟ ଗୋଟିଏ ଇଂରେଜୀ ବିଦ୍ୟାଳୟରେ ମାସିକ ୫୩୦ଙ୍କା ପାରିଶ୍ରମିକ ନେଇ ଶିକ୍ଷକତା କରୁଥିଲେ । ଥରେ ତାଙ୍କର ଜଣେ ବନ୍ଧୁ ପଚାରିଲେ, ଆପଣ ଏତେ ଅଳ୍ପ ଉପାର୍ଜ୍ଜନରୁ କିଣ ସଞ୍ଚୟ କରି ପାରିବେ ଯେ ତଦ୍ୱାରା ଆପଣଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦନ କରାଯିବ ? ସେ କହିଲେ "ମୋ ଅପେକ୍ଷା ଏ ବିଷୟରେ ସମାଜ ବେଶୀ ଚିନ୍ତା କରିବ । ପ୍ରତିଷ୍ଠା ପୂଜା ସକାଶେ ନ ହେଉ, ଅନ୍ତତଃ ସ୍ୱାସ୍ଥ୍ୟବିଧାନ ନିମନ୍ତେ ଶବ ଦାହ କରାଇବ ।"

× × × ×

ତିଲକ ମହାରାଜ ଭାରତବର୍ଷରେ ବ୍ରାହ୍ମଣ ଜାତିର ପ୍ରଭୁତ୍ୱ ସ୍ଥାପନ-ପ୍ରୟାସୀ ବୋଲି ଯେଉଁମାନେ ଭ୍ରମରେ ପଡ଼ିଥିଲେ, କଲିକତାରେ ତିଲକଙ୍କୁ ଦେଖି ଓ, ମହାରାଷ୍ଟ୍ରକୁଳରେ ଦୃଷ୍ଟିଦୋଷ ନ ଥିବା ତାଙ୍କ ମୁହଁରୁ ଶୁଣି ସେମାନଙ୍କ ମନରୁ ଏହି ସନ୍ଦେହ ଦୂର ହୋଇଥିଲା । ଥରେ ତିଲକ ମହାରାଜଙ୍କୁ ତାଙ୍କର ବନ୍ଧୁ ପଚାରିଲେ—ଆପଣ କଣ ବ୍ରାହ୍ମଧର୍ମାବଲମ୍ବୀ ଶ୍ରୀଯୁକ୍ତ ବିପିନଚନ୍ଦ୍ର ପାଲଙ୍କ ସହିତ ପୁନାରେ ନିଜଗୃହରେ ଏକାଠି ବସି ଭୋଜନ କରିବେ ? ତିଲକ ମହାରାଜ ଦୃଢ଼ର ସହିତ ଉତ୍ତର ଦେଇଥିଲେ—'ନିଶ୍ଚୟ' । ମହାରାଷ୍ଟ୍ର ଯେତେବେଳେ ସ୍ୱାଧୀନ ରାଜ୍ୟ ଥିଲା, ସେତେବେଳେ ବ୍ରାହ୍ମଣମାନେ ମନ୍ତ୍ରୀ ଓ ଶୂଦ୍ରମାନେ ରାଜା ଥିଲେ । ପାନ ଭୋଜନ ସମ୍ବନ୍ଧରେ ସାମାଜିକ ଜାତିଭେଦ ପ୍ରଥା ସେପରି କିଛି ନ ଥିଲା । ବ୍ରାହ୍ମଣ ମନ୍ତ୍ରୀ, ଶୂଦ୍ର ରାଜାଙ୍କୁ ଦୂରରେ ରଖିପାରୁ ନ ଥିଲେ । ତେଣୁ ସେହି ଦିନଠାରୁ ମହାରାଷ୍ଟ୍ର ପ୍ରଦେଶରେ ଦୃଷ୍ଟିଦୋଷ ବୋଲି କିଛି ନାହିଁ । ଆମ୍ଭମାନଙ୍କ ମଧ୍ୟରେ ବ୍ରାହ୍ମଣ, ଅବ୍ରାହ୍ମଣ ସମସ୍ତେ ଏକତ୍ର ପାନ ଭୋଜନ କରି ପାରନ୍ତି ।"

× × × ×

ପୁନାରେ ନିଉ ଇଂଲିଶ ସ୍କୁଲ ସ୍ଥାପିତ ହେବାବେଳେ ସେ ସ୍କୁଲରେ ସେପରି ଖୁବ୍ ବୁଦ୍ଧିମାନ ଛାତ୍ର ନଥିଲେ । ଛାତ୍ରମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ମୋଟା ବୁଦ୍ଧିଆ କିମ୍ବା ଦୁଷ୍ଟ । ଏଥିରେ କୌଣସି କୌଣସି ଶିକ୍ଷକ ହତାଶ ହେବାର ଦେଖି ତିଲକ ମହାରାଜ କହିଥିଲେ, "ଏହାହିଁ ଆମ୍ଭମାନଙ୍କର ପ୍ରକୃତ ପରୀକ୍ଷାର କ୍ଷେତ୍ର । ଯେବେ ଏହିଭଳି ଖରାପ ପିଲାଙ୍କୁ ଆମ୍ଭେମାନେ ଭଲ କରି ପାରିବୁ, ତାହାହେଲେ ଲୋକସାଧାରଣଙ୍କର ଆମ୍ଭମାନଙ୍କ ଉପରେ ନିଶ୍ଚୟ ବିଶ୍ୱାସ ଜନ୍ମିବ ।"

× × × ×

ଏକ ସମୟରେ ବାମ୍ବେରେ ଗୋଟିଏ ସଭା ହୋଇଥିଲା । ସେହି ସଭାରେ ଅନେକ ଉଚ୍ଚଶିକ୍ଷିତ ବ୍ୟକ୍ତି ଯୋଗ ଦେଇଥିଲେ ଏବଂ ଲୋକମାନ୍ୟ ତିଳକ 'ଭାରତବର୍ଷ ଓ ଇଜିପ୍ଟର ସଭ୍ୟତାକୁ' ତୁଳନା କରି ବକ୍ତୃତା ଦେଇଥିଲେ । ସେହି ସଭାର ସଭାପତି ତିଳକ ମହାରାଜଙ୍କର ଗବେଷଣାପୂର୍ଣ୍ଣ ବକ୍ତୃତା ଶୁଣି ତାଙ୍କର ପାଣ୍ଡିତ୍ୟରେ ଏତେଦୂର ମୁଗ୍ଧ ହୋଇଥିଲେ ଯେ ସେ ସଭା ଶେଷରେ ତିଳକଙ୍କୁ କହିଥିଲେ, ତିଳକ ମହାରାଜ ! ମୁଁ ଦେଖୁଛି ଆପଣ, ଆପଣଙ୍କ ଶକ୍ତିର ଅପବ୍ୟବହାର କରୁଛନ୍ତି । ଐତିହାସିକ ତଥ୍ୟ ଅନୁସନ୍ଧାନ କରିବା ବିଷୟରେ ଆପଣ ଯଥାର୍ଥ ଉପଯୁକ୍ତ । ଆପଣ, ଆପଣଙ୍କର ଅସାଧାରଣ ଶକ୍ତିକୁ ସେହିଥିରେ ଯଦି ନିଯୁକ୍ତ କରନ୍ତେ ତେବେ ଆପଣ ନିଶ୍ଚୟ ଜଗତ୍‌ବ୍ୟାପି ପ୍ରଶଂସା ଲାଭ କରନ୍ତେ । ତାକୁ ଛାଡ଼ି ଆପଣ ରାଜନୈତିକ ପଙ୍କରେ କାହିଁକି ଘାଣ୍ଟି ହେଉଛନ୍ତି ?'' ତାହାର ଉତ୍ତରରେ ତିଳକ ମହାରାଜ କହିଥିଲେ 'ଭାରତମାତା ବନ୍ଧ୍ୟା ନୁହନ୍ତି । ସ୍ୱରାଜ୍ୟ ଯେତେବେଳେ ହେବ, ସେତେବେଳେ ମୋପରି ସହସ୍ର ସହସ୍ର ପଣ୍ଡିତ ବାହାରିବେ । ସେହି ସ୍ୱରାଜ୍ୟ ପାଇବା ନିମନ୍ତେ ଆମ୍ଭମାନଙ୍କର ସମସ୍ତ ଶକ୍ତି, ସାମର୍ଥ୍ୟ ନିୟୋଜିତ କରିବାର ଆଜି ବିଶେଷ ଆବଶ୍ୟକ ହୋଇପଡ଼ିଛି ।'

× × × ×

---

# ଯୁଗଜନ୍ମା ତିଳକଜୀ

ଆଜଠାରୁ ଅର୍ଦ୍ଧ ଶତାବ୍ଦୀ ପୂର୍ବେ, ୧୯୨୦ ମସିହା ଅଗଷ୍ଟ ପହିଲା ! ଭାରତର ଆକାଶଗଗନରୁ ଗୋଟିଏ ଉଜ୍ଜ୍ୱଳ ତାରକା ଚିରଦିନ ପାଇଁ ଅସ୍ତମିତ

ହୋଇଗଲା । କର୍ମମୟ ଏକ ମହାଜୀବନର ଅବସାନ ଘଟିଲା । ସାରା ଦେଶରେ ଗଭୀର ଶୋକର ଛାୟା ଖେଳିଗଲା ।

ଲୋକମାନ୍ୟ ତିଳକ ଚାଲିଗଲେ, ଚାଲିଗଲେ ସେ ଅତି ଆପଣାର ଜନ୍ମଭୂମିକୁ ଛାଡ଼ି, ନିଥର ଆକାଶ ନୀରବରେ ହା' ହା'କାର କରି ଉଠିଥିଲା । ଅଗଣିତ ମୂକ, ନିରନ୍ନ ଜନତାର ଅବାରିତ ଅଶ୍ରୁଧାରା ଛୁଟି ଚାଲିଥିଲା । ସଦିଚ ବିଦେଶୀ ସରକାର ଉତ୍ଫୁଲ୍ଲ ହୋଇ ଉଠିଥିଲା କ୍ଷଣିକ ପାଇଁ ।

ତିଳକଜୀ ଚାଲିଗଲେ । ଆଉ ଫେରିଲେ ନାହିଁ । ତାଙ୍କ ମର ଶରୀର ମାଟିରେ ମିଶିଗଲା । ମାତ୍ର ସେ ଉନ୍ନୀତ ହେଲେ, ଅମରତ୍ୱର ସୋପାନକୁ । ସେ ଆଲୋକ ଲିଭିଗଲା ସତ, କିନ୍ତୁ ସହସ୍ର ପ୍ରଦୀପ ଜଳାଇ ଦେଇଗଲା । ସେ ମୁଖ ମୂକ ହୋଇଗଲା ସତ, ମାତ୍ର କୋଟି କୋଟି ଜନତାଙ୍କୁ ମୁଖର କରି ଦେଇଗଲା । ସାରା ଜୀବନ ସେ ଥିଲେ ନିର୍ଭୀକ । ତାଙ୍କ ମନର ବଳ ଥିଲା ଅସୀମ । ମୃତ୍ୟୁ ପର୍ଯ୍ୟନ୍ତ ସେ ଥିଲେ ଅପରାହତ । ଇଂରେଜୀ ଶାସକଙ୍କ ନିକଟରେ ମଥାନତ କରିନଥିଲେ ସେ । ହୃଦୟ, ଦେହ ଓ ମନର ସମସ୍ତ ବଳ ବିନିଯୋଗ କରି ସେ ଲଢ଼ିଥିଲେ ଏହି ଜାତି ପାଇଁ—ମୁକ୍ତିର ଆସ୍ୱାଦ ଦେବାକୁ । ଜାତୀୟତାର ଅଗ୍ନିରେ ସେ ଝାସ ଦେଇଥିଲେ । ଶୁଦ୍ଧ ସୁବର୍ଣ୍ଣ ଭଳି ଝଲି ଉଠିଥିଲା ତା'ଙ୍କ ବୀରତ୍ୱ, ବରିତ୍ୱ, ଆଉ ସାହସିକତା । ନିଦ୍ରିତ ଭାରତୀୟଙ୍କ କାନରେ ମନ୍ତ୍ର ପଢ଼ି ସେ ଶୁଣାଇଥିଲେ—"ସ୍ୱାଧୀନତା ମୋର ଜନ୍ମଗତ ଅଧିକାର ।" ଏହି ସ୍ୱାଧୀନତା—ପାଗଳ ମଣିଷ ଆଜୀବନ କାରାବରଣ କରିଥିଲା କେବଳ ଭାରତ ମାତା ଗଳାରେ ବିଜୟ ଓ ସାଫଲ୍ୟର ଜୟମାଲ୍ୟ ପିନ୍ଧାଇ ଦେବାପାଇଁ, ପରାଧୀନତାର ନିଗଡ଼ରୁ ମୁକ୍ତ କରିବା ପାଇଁ । ଆଜି ଆଉ ସେ ନାହାନ୍ତି । ଅର୍ଦ୍ଧ ଶତାବ୍ଦୀ ହେଲା ସେ ଚାଲିଯାଇଛନ୍ତି ମାତ୍ର ସ୍ୱାଧୀନତାର ଆସ୍ୱାଦ ପାଇଛି ଦେଶମାତୃକା । ଆମେ ଆମର 'ଜନ୍ମଗତ ଅଧିକାର' ସାବ୍ୟସ୍ତ କରି ପାରିଛୁଁ । ତଥାପି ସେ ସ୍ମରଣୀୟ, ଚିର ସ୍ମରଣୀୟ—ଆଉ ପ୍ରାତଃ ସ୍ମରଣୀୟ ।

ସେବା, ତ୍ୟାଗ ଆଉ ସ୍ୱଦେଶପ୍ରୀତିର ପୃଷ୍ଠଭୂମିରେ ସେ ଥିଲେ ଏ ଦେଶର ଜଣେ ଶକ୍ତିଶାଳୀ ସୈନିକ । ପାଣ୍ଡିତ୍ୟ ଜ୍ଞାନ ଚରିତ୍ରବତ୍ତା ଓ ନିଃସ୍ୱାର୍ଥତା ତାଙ୍କୁ ଆହୁରି ମହନୀୟ କରି ତୋଳିଥିଲା । ସଙ୍କୀର୍ଣ୍ଣତା ତାଙ୍କୁ ସ୍ପର୍ଶ କରି ପାରି ନ ଥିଲା । ସେ ଥିଲେ ନିର୍ମଳ, ନିଷ୍କଳଙ୍କ ଆଉ ଅନାବିଳ । ପ୍ରକୃତ ଶିକ୍ଷାର ଆଲୋକରେ ସେ ଥିଲେ ଚିର ଉଜ୍ଜ୍ୱଳ, ଆଉ ଭାସ୍ୱର । ଅର୍ଥର ମୋହ ତାଙ୍କୁ ଟାଣି ଧରି ପାରି ନ ଥିଲା । ସେ ଅଣ୍ଟାଭିଡ଼ି ବାହାରିଥିଲେ ଦେଶର ଯୁବ-ଗୋଷ୍ଠୀଙ୍କ ମଧ୍ୟରେ ଜ୍ଞାନାଲୋକ ବିତରଣ କରିବା ପାଇଁ । ସେଇ ମହନୀୟ ବ୍ରତରେ ସେ ନିଜକୁ ଉତ୍ସର୍ଗ କରିଥିଲେ । ଦେଶବାସୀଙ୍କ ଦୁଃଖଦୈନ୍ୟ ଓ ନିର୍ଯ୍ୟାତନା ତାଙ୍କ ହୃଦୟକୁ କରୁଣ ରସରେ ଆପ୍ଲୁତ କରିଥିଲା । ସେ ସେମାନଙ୍କର ଦୁର୍ଦ୍ଦଶାର ମୋଚନ ପାଇଁ ପ୍ରାଣପାତ ଉଦ୍ୟମ କରିଗଲେ । କାରାଗାର ତାଙ୍କ ମନରେ ଲେଶମାତ୍ର ଭୀତି ସଞ୍ଚାର କରି ପାରି ନ ଥିଲା । ବ୍ରିଟିଶ୍ ସରକାରର ବନ୍ଧୁକ-ଗୁଳି ତାଙ୍କୁ ତାଙ୍କ ନୀତି ପଥରୁ ତିଳେ ମାତ୍ର ଘୁଞ୍ଚାଇ ପାରି ନ ଥିଲା । ଇଂରେଜ ସରକାର ତାଙ୍କର ଦୁର୍ଭେଦ୍ୟ, ଅଜେୟ ଶକ୍ତିକୁ ଭୟ କରି ବହୁବାର ପିଞ୍ଜରାବଦ୍ଧ କରି ରଖିଥିଲା, ମାତ୍ର ତାଙ୍କର ଥିଲା ଗଭୀର ଆତ୍ମପ୍ରତ୍ୟୟ । କାରାବଦ୍ଧ ତିଳକଜୀ ମୁକ୍ତ ତିଳକଜୀଙ୍କଠାରୁ କୌଣସି ଗୁଣରେ ଊଣା ଶକ୍ତିଶାଳୀ ନ ଥିଲେ । ସେ ଚାହୁଁଥିଲେ ନିଜକୁ ଯନ୍ତ୍ରଣାବଦ୍ଧ କରି ଦେଶର ମୁକ୍ତି । ଧନ୍ୟ ସେ ଜୀବନାଦର୍ଶ !

ତିଳକଜୀ ଥିଲେ ଭାରତୀୟ ସଂସ୍କୃତିର ନିଷ୍ଠାପର ଉପାସକ । ସଂସ୍କୃତ ଭାଷାରେ ଅସାଧାରଣ ପାଣ୍ଡିତ୍ୟ ଥିଲା ତାଙ୍କର । ଭାରତର ପୁରାଣ ଶାସ୍ତ୍ର, ବେଦ ବେଦାନ୍ତ, ଗୀତା ଭାଗବତ ତାଙ୍କୁ ମହାନ ଆଦର୍ଶରେ ଅନୁପ୍ରାଣିତ କରିଥିଲା । ମରହଟ୍ଟା ବୀର ଶିବାଜୀ ଥିଲେ ତାଙ୍କର ଆଦର୍ଶ । ଶିବାଜୀଙ୍କର ପଦାଙ୍କ ଅନୁସରଣ କରୁଥିଲେ ସେ, ଶିବାଜୀଙ୍କର ଜନ୍ମୋତ୍ସବ ପ୍ରତିବର୍ଷ ଅତି ଆନନ୍ଦ ସହକାରେ ସେ ପାଳନ କରୁଥିଲେ ।

ଦେଶ ଥିଲା ତାଙ୍କର ଧର୍ମ, ଆଉ ଦେଶ ଥିଲା ତାଙ୍କର ନୀତି, ଦେଶଥିଲା ତାଙ୍କର ଜାଗରଣର ଚିନ୍ତା, ଆଉ ଶୟନର ସ୍ୱପ୍ନ । 'କେଶରୀ' ଓ 'ମରହଟ୍ଟା' ନାମକ ଦୁଇଟି ସମ୍ବାଦପତ୍ର ପ୍ରକାଶ କରି ସେ ଲୋକମାନଙ୍କ ମନରେ ସ୍ୱଦେଶପ୍ରୀତି ଉଦ୍ରେକ କରୁଥିଲେ । ଇଂରେଜୀ ସରକାରଙ୍କ ଚକ୍ଷୁଶୂଳ ହୋଇ ରାଜଦ୍ରୋହ ଅପରାଧରେ ବହୁବାର ସେ ଦଣ୍ଡିତ ହୋଇଥିଲେ, ତଥାପି ତାଙ୍କ ନିର୍ଭୀକତା ମଉଳି ଯାଇନଥିଲା । ନିଜ ନିର୍ଭୀକତାର ଚରମ ଦୃଷ୍ଟାନ୍ତ ଦେଇ ସେ ବିଚାରପତିଙ୍କ ସମ୍ମୁଖରେ ନିଜକୁ ନିର୍ଦ୍ଦୋଷବୋଲି ଘୋଷଣା କରୁଥିଲେ । ନିଜର କର୍ତ୍ତବ୍ୟ ନିକଟରେ ସେ ଥିଲେ ଦୃଢ଼ପ୍ରତିଜ୍ଞ ସେପ୍ରକାର କର୍ତ୍ତବ୍ୟ ନିଷ୍ଠାର ନଜିର ଖୁବ୍ କମ୍ ଦେଖାଯାଏ ।

ତିଲକଜୀ ମହାରାଷ୍ଟ୍ରରେ ଜନ୍ମ ହୋଇଥିଲେ ସତ, ମାତ୍ର ତାଙ୍କର ଖ୍ୟାତି ସମଗ୍ର ପୃଥିବୀରେ ବ୍ୟାପି ଯାଇଥିଲା । ସେ ବ୍ୟକ୍ତିବିଶେଷ ହୋଇ ଜନ୍ମ ହୋଇ-ଥିଲେହେଁ, ମୃତ୍ୟୁବେଳକୁ ଏକ ଅନୁଷ୍ଠାନରେ ପରିଣତ ହୋଇଥିଲେ । ସେ ଏ ଦେଶବାସୀଙ୍କ ହୃଦୟରେ ସତତ ବରେଣ୍ୟ । ଆଜି ଠିକ୍ ତାଙ୍କ ମହାପ୍ରୟାଣର ଅର୍ଦ୍ଧଶତାବ୍ଦୀ ପରେ ଆତ୍ମ-ସମୀକ୍ଷା ଆଉ ଆତ୍ମ ବିଚାରର ବେଳ ଆସିଛି । ଆମେ ସ୍ୱାଧୀନ ହୋଇଛୁ ସତ, ମାତ୍ର ସ୍ୱ-ଅଧୀନରେ ନାହୁଁ । ମୁକ୍ତିର ସ୍ୱାଦ ଆହରଣ କରି ମଧ୍ୟ ଆମେ ଶକ୍ତିହୀନ । ଅର୍ଥ ପାଇଁ ଆଜି ଦେଶରେ ଶତ ଅନର୍ଥ ସୃଷ୍ଟି ହେଉଛି । କ୍ଷମା ପରିବର୍ତ୍ତେ କ୍ଷମତାର ମୋହ ଆମକୁ ଆଜି ବାନ୍ଧି ରଖିଛି । ଦୂର ଦିଗ୍‌ବଳୟରେ ଆଶାର ଆଲୋକ ନିଷ୍ପ୍ରଭ ହୋଇଯାଇ ଆଶଙ୍କାର ଘନ କୁହେଳି ଘୋଟି ଯାଇଛି । ଆଧ୍ୟାତ୍ମିକତାର ପୃଷ୍ଠଭୂମି ଭାରତବର୍ଷ ଆଜି ଅନୀତି ଓ ଅନ୍ୟାୟର ଚରମ ଆବିଳତାରେ ପଙ୍କିଳ । ଦେଶର ଯୁବଶକ୍ତି ନିଜର ସ୍ୱତନ୍ତ୍ର ଅଧିକାର ଜାହିର କରୁଛି, ସାମ୍ପ୍ରଦାୟିକ ସଦ୍‌ଭାବ ଓ ଐକ୍ୟ ପରିବର୍ତ୍ତେ ଅଶାନ୍ତି ଓ ଅନୈକ୍ୟ ବଢ଼ି ଚାଲିଛି । ଅହିଂସା ଲୋପ ପାଇ ହିଂସାର ଅବାଧ ରାଜୁତି ଚାଲିଛି । ସ୍ୱରାଜ ପାଇ ମଧ୍ୟ ଅରାଜକତା ଲାଗି ରହିଛି । ଦେଶର ସଙ୍କଟସନ୍ଧିବେଳେ ଘନଘଟା ପୂର୍ଣ୍ଣ ମୁହୂର୍ତ୍ତରେ ଦଳୀୟ ସ୍ୱାର୍ଥ ନେଇ ଆଜି

ଟେଣ୍ଡାଓଟେସ୍ ସୃଜନ୍ତୁ । ଏଭଳି ଏକ ସଙ୍କଟପୂର୍ଣ୍ଣ ପରିସ୍ଥିତିରେ ତିଳକଙ୍କ ସ୍ୱପ୍ନ ସଫଳ ହୋଇଛି କି ? ତେଣୁ ଆଜି ସ୍ମରଣ କରିବାର ବେଳ ଆସିଛି ସେଇ କ୍ରାନ୍ତିକାରୀ ଘୋଷଣା—

"ମୁଁ ଭାରତକୁ ମୋର ମାତା ଓ ଦେବୀ ରୂପେ ପୂଜା କରେ । ଭାରତୀୟ ଜନତାକୁ ମୋର ଆତ୍ମୀୟ ସ୍ୱଜନ ମନେ କରେ, ସେମାନଙ୍କର ରାଜନୈତିକ ଓ ସାମାଜିକ ଉଦ୍ଧାର ପାଇଁ ନିଷ୍ଠା ଓ ଅନୁରକ୍ତି ସହିତ କାର୍ଯ୍ୟ କରିବାକୁ ମୁଁ ମୋର ପରମ ଧର୍ମ ଓ କର୍ତ୍ତବ୍ୟ ମନେ କରେ ।"

---

## ଲୋକମାନ୍ୟ ତିଳକଙ୍କ ବାଣୀ

ସ୍ୱରାଜ୍ୟ ଆମ୍ଭମାନଙ୍କର ଜନ୍ମଗତ ଅଧିକାର । ଏହି ସ୍ୱରାଜ୍ୟ ସଂଗ୍ରାମରେ ଆମ୍ଭମାନଙ୍କୁ ଐକ୍ୟବଦ୍ଧ ହେବାକୁ ହେବ । ଯେ ପର୍ଯ୍ୟନ୍ତ ଦେଶର ଜନସାଧାରଣ ଆମ୍ଭମାନଙ୍କ କାର୍ଯ୍ୟରେ ଯୋଗଦେଇନାହାନ୍ତି, ସେ ପର୍ଯ୍ୟନ୍ତ ଆମ୍ଭେମାନେ ସଫଳତା ଲାଭ କରିପାରିବୁ ନାହିଁ ।

+ + +

ଅଜ୍ଞ ଗ୍ରାମବାସୀମାନଙ୍କୁ ଉପଯୁକ୍ତ ରାଜନୈତିକ ଶିକ୍ଷା ଦେବାକୁ ହେବ । ଗ୍ରାମେ ଗ୍ରାମେ ବୁଲି ସ୍ୱାଧୀନତା ମହା ମନ୍ତ୍ର ପ୍ରଚାର କରିବାକୁ ହେବ । ଗ୍ରାମବାସୀମାନଙ୍କୁ ଉଦ୍‌ବୁଦ୍ଧ କର; ଯଦି ସ୍ୱରାଜ୍ୟ ଲାଭ କରିବାକୁ ଚାହଁ, ତେବେ ଜନଶକ୍ତିକୁ କର୍ମକ୍ଷେତ୍ରକୁ ଟାଣି ଆଣ ।

+ + +

ସ୍ୱରାଜ୍ୟ ଲାଭ କରି ନ ପାରିଲେ ଭାରତ କଦାପି ସୁଖି ହୋଇ ପାରିବ ନାହିଁ । ବଞ୍ଚି ରହିବାକୁ ହେଲେ ଅବିଲମ୍ବେ ସ୍ୱରାଜ୍ୟ ଆମ୍ଭମାନଙ୍କର ଆବଶ୍ୟକ । ସ୍ୱାଧୀନତା ଛଡ଼ା ଆମ୍ଭମାନଙ୍କର ଦୁଃଖ ଦାରିଦ୍ର୍ୟ କଦାପି ଘୁଞ୍ଚିବ ନାହିଁ ।

+ + +

ରାଜନୀତି ସମ୍ପର୍କରେ ରହିବାକୁ ହେଲେ ଆମ୍ଭମାନଙ୍କୁ ନାନା ବିପଦର ସମ୍ମୁଖୀନ ହେବାକୁ ହେବ । ମୁଁ ଏହି ପ୍ରକାର ବିପଦର ସମ୍ମୁଖୀନ ହେବାକୁ ସର୍ବଦା ପ୍ରସ୍ତୁତ ଅଛି । ସରକାର ମତେ ନିର୍ଯାତିତ କରି କିଛି କରିପାରିବେ ନାହିଁ । କାରଣ, ମୁଁ କୌଣସି ପ୍ରକାର କଷ୍ଟକୁ ଭୟ କରେ ନାହିଁ । ଯଦି ଆଜି ବିପଦରେ ପଡ଼ି ଲଜ୍ଜାଜନକ କାପୁରୁଷତା ଦେଖାଏ, ତେବେ ଜନସାଧାରଣ ଅତ୍ୟନ୍ତ ଭଗ୍ନୋତ୍ସାହ ହୋଇପଡ଼ିବେ । ମୁଁ ଦଣ୍ଡିତ ହେଲେ ଜନସାଧାରଣଙ୍କ ସହାନୁଭୂତି ମତେ ବଳ ଦେବ ।

+ + +

ବିପକ୍ଷ ପକ୍ଷ ଇଚ୍ଛା କରନ୍ତି ଯେ ମୁଁ ନତମସ୍ତକରେ ଦୋଷ ସ୍ୱୀକାର କରେଁ । କିନ୍ତୁ ମୁଁ ତାହା ପାରିବି ନାହିଁ । ମୋର ଚରିତ୍ର ବଳରେ ମୁଁ ଜନ-ସାଧାରଣଙ୍କ ଉପରେ ମୋର ପ୍ରଭାବ ସ୍ଥାପନ କରିଅଛି ଏବଂ ତାହାରି ଉପରେ ମୋର ଦେଶ ସେବାର ସୁଯୋଗ ନିର୍ଭର କରୁଅଛି । ଏହି ଅବସ୍ଥାରେ ଯଦି ମୁଁ ଭୀତ ହୁଏ, ତେବେ ମହାରାଷ୍ଟ୍ର ପ୍ରଦେଶରେ ବାଘ ଓ ଅଣ୍ଡାମାନରେ ବାଘ ଉଭୟ ମୋ ପକ୍ଷରେ ସମାନ ହେବ ।

+ + +

ଧର୍ମ ଜାତୀୟ ଜୀବନର ଏକ ମୌଳିକ ଉପାଦାନ । 'ଧୃ' ଧାତୁରୁ ଏହି ଶବ୍ଦର ଉତ୍ପତ୍ତି । 'ଧୃ' ଧାତୁର ଅର୍ଥ ବହନ କରିବା ବା ଧାରଣ କରିବା ।

ଧର୍ମ ଅର୍ଥ ଭଗବାନଙ୍କ, ପ୍ରତି ଓ ଜୀବପ୍ରତି ଆମ୍ଭମାନଙ୍କର କର୍ତ୍ତବ୍ୟ । ଏହି ଦୁଇଟି ଉପାଦାନ ଦ୍ୱାରା ଧର୍ମ ଗଠିତ—ଭଗବାନଙ୍କ ପ୍ରତି ଓ ମନୁଷ୍ୟ ପ୍ରତି କର୍ତ୍ତବ୍ୟ । ଫଳତଃ ହିନ୍ଦୁ ଧର୍ମରେ ନୈତିକ ଓ ସାମାଜିକ ଉଭୟ ପ୍ରକାର ଦାୟିତ୍ୱ ରହିଛି ।

+ + +

ସତ୍ୟର ବିଶେଷତ୍ୱ ଏହି ଯେ ଏହା ବିଶ୍ୱଜନୀନ ଓ ଉଦାର । ଏହା କୌଣସି ଜାତି ବିଶେଷର ସମ୍ପତ୍ତି ନୁହେଁ । ହିନ୍ଦୁଧର୍ମ ସମସ୍ତ ଧର୍ମକୁ ସ୍ୱୀକାର କରେ । କାରଣ, ସମସ୍ତ ଧର୍ମ ସତ୍ୟରେ ପ୍ରତିଷ୍ଠିତ ।

+ + +

ଆମ୍ଭେମାନେ ଗୋଟିଏ ଜାତି । ଏହି ପୃଥିବୀରେ ଆମ୍ଭମାନଙ୍କ କର୍ତ୍ତବ୍ୟ ସାଧନର ଆବଶ୍ୟକତା ଅଛି । ମନୁଷ୍ୟର ଯେ ସମସ୍ତ ସ୍ୱାଭାବିକ ଅଧିକାର ରହିଛି, ସେ ସବୁ ଆମ୍ଭମାନଙ୍କୁ ଲାଭ କରିବାକୁ ହେବ । ଆମ୍ଭେମାନେ ସ୍ୱାଧୀନତା ଚାହୁଁ । ତେଣୁ ସ୍ୱାଧୀନତାର ମୌଳିକ ଅଧିକାର ଆମ୍ଭମାନଙ୍କୁ ଅର୍ଜନ କରିବାକୁ ପଡ଼ିବ । ଆମ୍ଭେମାନେ ଯଦି ଏହା ଲାଭ କରି ନ ପାରୁଁ, ଆମ୍ଭମାନଙ୍କ ପକ୍ଷରେ କୌଣସି ପ୍ରକାର ସଂସ୍କାର ଫଳପ୍ରଦ ହେବ ନାହିଁ । କେବଳ ମାତ୍ର ପୋଥିଗତ ବିଦ୍ୟାର କୌଣସି ମୂଲ୍ୟ ନାହିଁ । ତୁମ୍ଭେମାନେ କଣ ବିଶ୍ୱାସ କର, ଯେଉଁ ଜାତି ଆମ୍ଭମାନଙ୍କ ଉପରେ ପ୍ରଭୁତ୍ୱ ବିସ୍ତାର କରି ରହିଛି, ସେମାନେ କଣ ଆମ୍ଭମାନଙ୍କ ଅପେକ୍ଷା ବିଦ୍ୟାବୁଦ୍ଧିରେ ଶ୍ରେଷ୍ଠ ? ମୁଁ ଏହା କଦାପି ବିଶ୍ୱାସ କରେ ନାହିଁ । ଆମ୍ଭେମାନେ ମଧ୍ୟ ସେମାନଙ୍କ ଭଳି ବିଦ୍ୟା, ସାହସ ଓ କର୍ମଦକ୍ଷତାର ଯଥେଷ୍ଟ ପରିଚୟ ଦେଇପାରୁଁ । ସେ ଗୁଡ଼ିକ ଅବଶ୍ୟ ଧୂଳି ପରିପୁଷ୍ଟ ନୁହେଁ । କିନ୍ତୁ ସେଗୁଡ଼ିକ ଆମ୍ଭମାନଙ୍କ ମଧ୍ୟରେହିଁ ରହିଛି ।



+ + +

ମୁକ୍ତିର ପଥ କଦାପି ସୁଖ, ସ୍ୱାଚ୍ଛନ୍ଦ୍ୟ ସମାକୀର୍ଣ୍ଣ ନୁହେଁ । ଏହା ସତ୍ୟ ଯେ ଆମ୍ଭେମାନେ ଯାହା ଚାହୁଁ, ତାହା କେତେକ ପରିମାଣରେ ଗୋଟିଏ ବିପ୍ଳବ । କାରଣ ଆମ୍ଭେମାନେ ଅମଲାତନ୍ତ୍ରର ବର୍ତ୍ତମାନ ଶାସନ ପଦ୍ଧତିର ପୂର୍ଣ୍ଣ ପରିବର୍ତ୍ତନ ଚାହୁଁ ଏବଂ ଏକଥା ମଧ୍ୟ ସତ୍ୟ ଯେ ଯେ ବିପ୍ଳବ ରକ୍ତପାତ ବିହୀନ ହେବ । ତେଣୁ ତାହାପାଇଁ ଦେଶର ଲୋକଙ୍କୁ କୌଣସି ଦୁଃଖ, କଷ୍ଟ ସହ୍ୟ କରିବାକୁ ହେବନାହିଁ । ଏପରି ଧାରଣା କାହାରି ଥିଲେ ତାହା ନିର୍ବୋଧତାର ପରିଚାୟକ । କେବଳ ଦୁଃଖ, କଷ୍ଟ ନାହିଁକି, ଗୁରୁତର ଦୁଃଖ, କଷ୍ଟ ଭୋଗ କରିବାକୁ ହେବ । ଦୁଃଖ, କଷ୍ଟ ବରଣ କରିବାକୁ ପ୍ରସ୍ତୁତ ନ ହେଲେ କୌଣସି କାର୍ଯ୍ୟ ସାଫଲ୍ୟ ମଣ୍ଡିତ ହୁଏ ନାହିଁ କିମ୍ବା ହେବା ସମ୍ଭବପର ନୁହେଁ । ତୁମ୍ଭମାନଙ୍କର ବିପ୍ଳବ ରକ୍ତପାତ ବିହୀନ ହେବ—ଏହାର ଏପରି ଅର୍ଥ ନୁହେଁ ଯେ ତୁମ୍ଭମାନଙ୍କୁ ଦୁଃଖ, କଷ୍ଟ ସ୍ୱୀକାର କରିବାକୁ ହେବନାହିଁ କିମ୍ବା ଜେଲ ଯିବାକୁ ପଡ଼ିବ ନାହିଁ ।

\+ \+ \+

ଜୁରିମାନେ ମତେ ଦୋଷୀ ସାବ୍ୟସ୍ତ କଲେହେଁ, ମୁଁ ନିଜକୁ ନିର୍ଦ୍ଦୋଷ ମନେ କରେଁ । ଯେ ଶକ୍ତିଦ୍ୱାରା ଏହି ଜଗତ ପରିଚାଳିତ ହେଉଅଛି, ସେ ଶକ୍ତି ମାନବୀୟ ବିଚାର କ୍ଷମତାଠାରୁ ଅତ୍ୟନ୍ତ ଶ୍ରେଷ୍ଠ । ଯେ ପବିତ୍ର କାର୍ଯ୍ୟ ସାଧନ ନିମନ୍ତେ ମୁଁ ଯତ୍ନ କରୁଅଛି, ମୋର କଷ୍ଟ କ୍ଳେଶ ଫଳରେ ଦେଶ ତାହାର ସିଦ୍ଧି ପଥରେ ଅଗ୍ରସର ହେବ । ବୋଧହୁଏ ଏହା ଭଗବାନଙ୍କର ଅଭିପ୍ରାୟ ।

---

Printed by-Smt. Kalpana Mallick.
**Unique Printers:—BaluBazar. Cuttack-2.**